ଛାତ୍ରସାଥୀ ବିଶ୍ୱ ବିଚିତ୍ରା-୨



# ଅର୍ନେଷ୍ଟ ହେମିଂୱେ

# ଛାତ୍ରସାଥୀ : ବିଶ୍ୱବିଚିତ୍ରା (୪୪)
ଓ
# ଅର୍ନେଷ୍ଟ ହେମିଂୱେ

୨୨ଶ ବର୍ଷ  ୮ମ ସଂଖ୍ୟା
୧୯୮୪

ସଂପାଦକ :
ଶ୍ରୀ ଯୋଗେନ୍ଦ୍ର କୁମାର ମହାନ୍ତି

ପରିକଳ୍ପନା ସଂପାଦକ :
ଶ୍ରୀ ନବକିଶୋର ମହାପାତ୍ର

ପ୍ରକାଶକ ଓ ମୁଦ୍ରକ :
କେ. ମହାପାତ୍ର ଏଣ୍ଡ କୋ.ଙ୍କ
ତରଫରୁ
ଶ୍ରୀ ବୃନ୍ଦାବନ ଦାସଙ୍କ ଦ୍ୱାରା
ଗ୍ରାମପଞ୍ଚାୟତ ପ୍ରେସ
କଟକ ୨ ରେ ମୁଦ୍ରିତ

ମୂଲ୍ୟ : ଟ ୬-୦୦

## ସୂଚୀପତ୍ର


ଆଜ୍ଞା, ପତ୍ରିକାଟା ଟିକେ ଦେବେ କି ?
କାହିଁକି ? ଆପଣ ୨୫ ପଇସା ଦେଇ ଖଣ୍ଡିଏ ସିଗାରେଟ୍ ଖାଇପାରୁଛନ୍ତି, ଅଥଚ ୨୦ ପଇସା ଦେଇ ଖଣ୍ଡିଏ ପତ୍ରିକା କିଣିପାରୁନାହାନ୍ତି, ମାଗୁଛନ୍ତି? ଦୁଃଖର କଥା, କ୍ଷମା କରିବେ ଦେଇ ପାରିବି ନାହିଁ। ଏଇ ସେ ହକର ଏବେବି ଆମ କମ୍ପାର୍ଟମେଣ୍ଟରେ ପତ୍ରିକା ବିକୁଛି। ଖଣ୍ଡେ କିଣି ଆଣି ପଢ଼ନ୍ତୁ।

# ଅର୍ନେଷ୍ଟ ହେମିଂୱେ

## ( ୧ )

ଅମର କବି ରବୀନ୍ଦ୍ରନାଥ ଠାକୁର ନୋବେଲ ପ୍ରାଇଜ ପାଇ ବିଶ୍ୱବିଖ୍ୟାତ ହେଲେ । ନୋବେଲ ପ୍ରାଇଜ ତାଙ୍କୁ ବିଶ୍ୱକବି ରୂପେ ପରିଚିତ କରାଇଥିଲା । ସେ ଯେପରି ସାହିତ୍ୟ କ୍ଷେତ୍ରରେ ସୁନାମ ଅର୍ଜିଥିଲେ ସେହିପରି ହେମିଂୱେ ସାହିତ୍ୟରେ ନୋବେଲ ପ୍ରାଇଜ ପାଇବାପରେ ଜଣେ ବିଶ୍ୱବିଖ୍ୟାତ ସାହିତ୍ୟିକ ବୋଲି ଦେଶ ବିଦେଶରେ ପରିଚିତ ହୋଇଥିଲେ । ସାହିତ୍ୟ କ୍ଷେତ୍ରକୁ ତାଙ୍କର ଦାନ ଅସୀମ । ପୃଥିବୀର ସାହିତ୍ୟିକମାନଙ୍କ ମଧ୍ୟରେ ହେମିଂୱେଙ୍କ ପରି ଲେଖକ ଖୁବ୍ କମ୍ ଅଛନ୍ତି ।

ଆମ ଦେଶରେ ତାଙ୍କ ନାଁ ବେଶି ଲୋକ ଜାଣନ୍ତି ନାହିଁ । ତାଙ୍କୁ ଚିହ୍ନିଥିବା ଲୋକ ଆମ ଦେଶରେ ଖୁବ୍ କମ ଅଛନ୍ତି । କେବଳ ଲେଖକ ସାହିତ୍ୟିକମାନେ ତାଙ୍କୁ ଭଲଭାବେ ଜାଣିଥିବେ । ସେମାନଙ୍କ ମଧ୍ୟରୁ ସମସ୍ତେ ଜାଣିଥିବେ କି ନାଁ ସନ୍ଦେହ । କେତେ ଲୋକ କେତେ ଭାବରେ ନିଜର ଶକ୍ତି ବିକାଶ କରିଛନ୍ତି, ଲୋକସାଧାରଣଙ୍କ ଉପକାର କରିବା ଦିଗରେ ଯେଉଁମାନେ ଶକ୍ତି ଖଟାଇଛନ୍ତି, ସେମାନଙ୍କୁ ଲୋକମାନେ ବେଶି ମନେପକାନ୍ତି । କିଏ ନିଜ ଦେଶପାଇଁ, କିଏ ଜାତିପାଇଁ ସମସ୍ତ ଶକ୍ତି ଦାନ କରିଛନ୍ତି । ସେମାନେ କେବଳ ନିଜ ଜାତି କିମ୍ବା ଦେଶରେ ପୂଜିତ ହେଉଛନ୍ତି । କିନ୍ତୁ ମାନବ ସମାଜର ଉପକାର କରିବାପାଇଁ ଯେଉଁମାନେ ଲାଗିଛନ୍ତି ସେମାନଙ୍କର ଆଦର ସବୁ ଦେଶରେ ଯୁଗ ଯୁଗଧରି ହେଉଥିବ ।

ଆଜିକାଲି ଆଟମବମ୍, ହାଇଡ୍ରୋଜେନ ବମ୍ ଯୁଗରେ ଲୋକେ ବିଶେଷ ଭାବରେ ବୈଜ୍ଞାନିକମାନଙ୍କୁ ଉଚ୍ଚ ସ୍ଥାନ ଦେଉଛନ୍ତି । ଏ ବୋମାଗୁଡ଼ିକର ଧ୍ୱଂସକାରୀ ଶକ୍ତି ସବୁ ଯୁଗରେ ଧ୍ୱଂସକାରୀ ଅସ୍ତ୍ରଶସ୍ତ୍ରର ବଳଠାରୁ ବେଶିହୋଇ ପଡ଼ିଛି; କିନ୍ତୁ ସେହି ଧ୍ୱଂସକାରୀ ଶକ୍ତିକୁ ମାନବର ମଙ୍ଗଳ ନିମିତ୍ତ ଲଗାଇବାପାଇଁ ଯେଉଁମାନେ ମାନବ ମନରେ ଧାରଣା ଦେଉଛନ୍ତି, ସେମାନଙ୍କର ସ୍ଥାନ ଆହୁରି ଉଚ୍ଚରେ । ହେମିଂୱେଙ୍କ ପରି ସାହିତ୍ୟିକମାନେ ସାହିତ୍ୟିକ ଚିନ୍ତା ସଙ୍ଗେ ସଙ୍ଗେ ମାନବ ସମାଜକୁ ସୁଖ ଶାନ୍ତିରେ ଚଳେଇବା ପାଇଁ ନାନା ପ୍ରକାରର ବାଟ ବତେଇ ଦେଇ ଯାଉଛନ୍ତି । ସେଥିପାଇଁ ସାହିତ୍ୟିକମାନଙ୍କୁ ଅନ୍ୟାନ୍ୟ ଯୁଗପରି ଏ ଯୁଗରେ ମଧ୍ୟ ଉଚ୍ଚ ସ୍ଥାନ ଦିଆହୋଇଅଛି । ନୋବେଲ ପ୍ରାଇଜ ଅନୁଷ୍ଠାନ ଯେଉଁ ତିନି ବିଭାଗରେ ପ୍ରତିବର୍ଷ ପ୍ରାଇଜକୁ ବଣ୍ଟନ କରନ୍ତି, ତା' ଭିତରୁ ସାହିତ୍ୟ ଗୋଟିଏ ବିଭାଗ । ଏ ଅନୁଷ୍ଠାନ ଆରମ୍ଭ ହେବା ସମୟରୁ ପୃଥିବୀର

ସାହିତ୍ୟିକମାନଙ୍କ ମଧ୍ୟରୁ ପ୍ରତିବର୍ଷ ପ୍ରଧାନ ସାହିତ୍ୟିକ ଖୋଜିବା ଏହାର କାମ ।

୧୮୫୪ ମସିହାରେ ଏ ପ୍ରାଇଜ ଅନୁଷ୍ଠାନ ପକ୍ଷରୁ ଯେଉଁ ସାହିତ୍ୟିକଙ୍କୁ ଏ ପ୍ରାଇଜ ଦିଆଯାଇଥିଲା ତାଙ୍କର ନାମ ଅର୍ନେଷ୍ଟ ହେମିଂୱେ ।

( ୨ )

ପୃଥିବୀର ଧନୀ ଦେଶମାନଙ୍କ ମଧ୍ୟରେ ଆମେରିକା ପ୍ରଥମ । ପାଞ୍ଚଶହ ବର୍ଷ ତଳେ ଆମେରିକା ନାମରେ ଗୋଟିଏ ମହାଦେଶ ଅଛିବୋଲି ପୃଥିବୀର ଲୋକେ ଜାଣି ନଥିଲେ । ସେତେବେଳେ ଜଣାଶୁଣା ମହାଦେଶ ମଧ୍ୟରେ ଏସିଆ, ୟୁରୋପ ଓ ଆଫ୍ରିକା ମହାଦେଶକୁ ଲୋକେ ମନେକରୁଥିଲେ । ଆହୁରି ଗୋଟାଏ ଏକ ବଡ ଭୂଖଣ୍ଡ ରହିଛିବୋଲି ଲୋକମାନଙ୍କର ଧାରଣା ନଥିଲା । ପାଞ୍ଚଶହ ବର୍ଷ ପୂର୍ବେ ସେଠାକୁ ଲୋକମାନେ ଯାଇ ଦେଖିଲେ ଯେ, ତାହା ଗୋଟିଏ ବିରାଟ ଦେଶ — ବସବାସ କରିବା ପାଇଁ ଉପଯୁକ୍ତ । ୟୁରୋପ ମହାଦେଶର ଲୋକମାନେ ଏମିତି ଜାଗା ଖୋଜୁଥିଲେ । ସେମାନଙ୍କ ଦେଶଗୁଡ଼ିକ ଲୋକବାକରେ ଯେପରି ଭରପୂର ହୋଇ ଯାଇଥିଲା, ବ୍ୟବସାୟ, ବାଣିଜ୍ୟ, ଚାକିରିବାକିରିରେ ସେପରି ପୂର୍ଣ୍ଣ ହୋଇ ଯାଇଥିଲା । ଇଂଲଣ୍ଡ, ସ୍ପେନ୍, ପର୍ତ୍ତୁଗାଲ, ଫ୍ରାନସ ପ୍ରଭୃତି ଦେଶରୁ ଦଳଦଳ ଲୋକ ଜାହାଜରେ ଯାଇ ଆମେରିକାର ଖାଲି ସ୍ଥାନମାନଙ୍କରେ ବସତି ସ୍ଥାପନ କଲେ । କ୍ରମେ କ୍ରମେ ଦୁଇଟିଯାକ ଆମେରିକାର ଦେଶ ୟୁରୋପୀୟମାନଙ୍କ ବସତି ଭୂମି ହେଲା ।

ସେହି ପାଞ୍ଚଶହ ବର୍ଷ ତଳର ଆମେରିକା ଆଜିକାଲି ଧନଜୀବନ ଗୋପଲକ୍ଷ୍ମୀରେ ଫାଟିପଡୁଛି । ଯେତେ ନୂଆ ଜିନିଷ ଦେଖିବ, ସବୁ ସେଇଠୁ ନୂଆ ହୋଇ ବାହାରୁଛି । କେତେ କଳକାରଖାନା, କେତେ ବଡ ବଡ ସହର ଆମେରିକାର ଭୂମିକୁ ଏବେ ଉଜ୍ଜଳ କରୁଛି । ଏ ଯୁଗରେ ସଭ୍ୟଦେଶମାନଙ୍କ ମଧ୍ୟରେ ଆମେରିକା ଦେଶର ନାଁ ନ ଗଣିବା ପାଇଁ କାହାର ସାଧ୍ୟ ଅଛି ? ଆଜିକାଲି ଫ୍ରାନସ, ପର୍ତ୍ତୁଗାଲ ବା ସ୍ପେନର ସମ୍ପତ୍ତି ହୋଇ ଆମେରିକା ନାହିଁ । ତାହା ସ୍ୱାଧୀନ ଦେଶ ।

ଏଇ ଆମେରିକା ଦେଶରେ ହେମିଂୱେଙ୍କ ଜନ୍ମ । ଆଜିକୁ ପ୍ରାୟ ୫୬ ବର୍ଷ ତଳେ ଉତ୍ତର ଆମେରିକାର ଇଲିଏନ୍‌ସ ରାଜ୍ୟର ଓକ ପାର୍କ ସହରରେ ହେମିଂୱେ ଜନ୍ମ ହୋଇଥିଲେ । ଓକ ପାର୍କ ବଡ ସହର ନୁହେଁ, ହେଲେ ଏପରି ଗୋଟିଏ ଛୋଟ ସହରର ନାଁ ଆଜି ମଧ୍ୟ ସମଗ୍ର ପୃଥିବୀରେ ଢବିଢବି ହୋଇ ବାଜୁଛି । ଦେଶର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ସେହି ଛୋଟ ସହରଟି ହେମିଂୱେଙ୍କ ଯୋଗୁଁ ବଡ ହୋଇଛି । ୧୮୯୯ ମସିହା ଜୁଲାଇ ମାସ ୨୫ ତାରିଖରେ ହେମିଂୱେ ଏହି ସହରରେ ଜନ୍ମ ଗ୍ରହଣ କରିଥିଲେ ।

ଆମେରିକା ଧନଜନରେ ପିନା ବଡ ଥିଲା, ସେ ଦେଶରେ କେତେ ବୈଜ୍ଞାନିକ ଜନ୍ମ ହୋଇ ନାନା ପ୍ରକାର ଯନ୍ତ୍ର ପିନା ବାହାର କରିଥିଲେ କିନ୍ତୁ ସାହିତ୍ୟ ଦିଗରେ ନାଁ କରିବାଭଳି ସେଠାରେ ଅଳ୍ପଲୋକ ଜନ୍ମ ହୋଇଥିଲେ । ହେମିଂଓ୍ୱେ ଏ ଦିଗ ର ଆମେରିକାକୁ ମଧ୍ୟ ଧନୀ କରାଇଲେ । ହେମିଂଓ୍ୱେଙ୍କ ପୂର୍ବରୁ ବିଭିନ୍ନ ବିଷୟରେ ଆମେରିକାର କେତେକ ନୋବେଲ ପ୍ରାଇଜ ପାଇଛନ୍ତି । ହେମିଂଓ୍ୱେ ସାହିତ୍ୟ ଦିଗରେ ଆମେରିକାରୁ ନୋବେଲ ପ୍ରାଇଜ ପାଇଲେ । ସମସ୍ତ ଆମେରିକା ଦେଶ ସେଥିପାଇଁ ତାଙ୍କୁ ନାନା ଭାବରେ ସମ୍ମାନ ଦେଖାଇବାକୁ ଲାଗିଲା ।

( ୩ )

ହେମିଂଓ୍ୱେଙ୍କୁ ଯେତେବେଳେ ବୟସ ବେଶି ହୋଇ ନଥାଏ । ସେ ଛୋଟ ପିଲା । ବାପା ତାଙ୍କୁନେଇ ସ୍କୁଲରେ ଭର୍ତ୍ତିକରିଦେଲେ । ଆମେରିକାର ପାଠପଢା ଆମ-ଦେଶପରି ନୁହେଁ । ଶିକ୍ଷକ କିମ୍ବା ଶିକ୍ଷୟିତ୍ରୀମାନେ ଛାତ୍ରମାନଙ୍କୁ ନାନାପ୍ରକାର ଖେଳ ଖେଳାନ୍ତି, ସେଇ ଖେଳ ଭିତରେ ଛାତ୍ରମାନଙ୍କୁ ଅନେକ କଥା ଶିଖାଦିଅନ୍ତି । ପିଲାଦିନରୁ ଛାତ୍ରମାନେ ଖେଳ ବିଷୟରେ ଭରି ଧୁରନ୍ଧର ହୁଅନ୍ତି । ହେମିଂଓ୍ୱେ ପାଠ ପଢ଼ିଲା ବେଳେ ତାଙ୍କୁ ତ ବୟସ କମ ହୋଇଥାଏ, ତାଙ୍କୁ ଖେଳ ଭରି ଭଲଲାଗେ, ସେ ଖେଳରୁ ଯେତେ ଭଲ ପାଆନ୍ତି, ପାଠ ପଢ଼ାକୁ ସେତେ ଭଲ ପାଆନ୍ତି ନାହିଁ । ଯେତେ ପ୍ରକାର ଖେଳହୁଏ ହେମିଂଓ୍ୱେଙ୍କ ନାମ ସବୁଥିରେ ଆଗରେ ଥାଏ । ସ୍କୁଲର ଭଲଭଲ ଖେଳାଳିଙ୍କ ଭିତରେ ତାଙ୍କର ନାମ ଗଣାଯାଏ । ସେ ଭଲ ଖେଳନ୍ତି ପିନା, ସେତେ ଭଲ ପାଠ ପଢନ୍ତି ନାହିଁ ।

ଖେଳ ଭିତରେ ତାଙ୍କୁ ସବୁଠୁ ଭଲ ଲାଗେ "ଫୁଟବଲ" ଖେଳ । ଅନ୍ୟ କୌଣସି ଜାଗାରୁ ଫୁଟବଲ ଖେଳାଳିଦଳ ସହରକୁ ଖେଳିବାକୁ ଆସିଲେ, ସେ ପାଠପଢା, ଖାଇବା ପିଇବା ସବୁ ଛାଡ଼ିଦେଇ ଖେଳ ପଡ଼ିଆରେ ଆଗେ ଯାଇ ହାଜର ହୋଇଥିବେ । ସେ ନିଜେ ମଧ୍ୟ ଫୁଟବଲ ଭଲ ଖେଳନ୍ତି । ଯେତେବେଳେ ବଡ଼ ହେଲେ, ସ୍କୁଲରେ ଭଲ ଖେଳାଳିଙ୍କ ମଧ୍ୟରେ ସେ ଜଣେ ଖେଳାଳି ଭାବରେ ଗଣାହେଲେ । ଶିକ୍ଷକ ଛାତ୍ର ସମସ୍ତେ ତାଙ୍କୁ ଆଦର କଲେ । ଅନେକ ସମୟରେ ସେ ପାଠ ପଢା ଛାଡ଼ିଦେଇ ଖେଳରେ ବେଶି ମନଯୋଗ ଦେଉଥିଲେ କିନ୍ତୁ ସେ ପାଠପଢାରେ ଅତ୍ୟନ୍ତ ଖରାପ ବି ନଥିଲେ । ସାଧାରଣ ଛାତ୍ରମାନଙ୍କ ପରି ସେ ମଧ୍ୟ ପଢୁଥିଲେ । କିନ୍ତୁ ଫୁଟବଲ ଖେଳର ବାହାଦୁର ଥିବାରୁ ସେ ସବୁଠି ଆଦର ପାଉଥିଲେ ।

ସ୍କୁଲରେ ପାଠ ପଢ଼ିଲାବେଳେ ତାଙ୍କର ଆଉକି କେତେଟାଏ ପ୍ରିୟ ଜିନିଷ ଥିଲା, ସେ ମଲ୍ଲଯୁଦ୍ଧ ଦେଖିବାକୁ ଭରି ଭଲ ପାଉଥିଲେ ଓ କୁସ୍ତିକସରତ ଜାଣିଥିଲେ ।

ସହରରେ କିମ୍ବା ଘର ପାଖଆଖରେ କେଉଁଠାରେ ମଲ୍ଲଯୁଦ୍ଧ ହେବାର ଖବର ତାଙ୍କ କାନରେ ପଡ଼ିଲେ ସେ ସେଠାରେ ଯାଇ ହାଜର ହେଉଥିଲେ । ତାଙ୍କର ସମବୟସ୍କ ବାଳକମାନଙ୍କ ସଙ୍ଗରେ ସେ ନିଜେ ମଲ୍ଲଯୁଦ୍ଧ କରିବାକୁ ବ ହାରି ପଡୁଥିଲେ ।

ମାଛ ମାରିବାରେ ସେ ଭରି ଦକ୍ଷ ଥିଲେ । ପୋଖରୀ କିମ୍ବା ହ୍ରଦ କୂଳରେ ବନିଶି କଣ୍ଟା ଧରି ସେ ଘଣ୍ଟାଘଣ୍ଟା ମାଛ ମାରିବାପାଇଁ ବସୁଥିଲେ । ସେଥିପାଇଁ ସେ ଅନେକ ସମୟରେ ଗାଳି ମଧ୍ୟ ଶୁଣୁଥିଲେ । କୌଣସିଠାରେ ଷଣ୍ଢ ଲଢାଇ ହେଉଥିଲେ ସେ ତତ୍‌କ୍ଷଣାତ ଯାଇଁ ସେଠାରେ ପହଞ୍ଚି ଯାଉଥିଲେ । ତାଙ୍କର ପିଲାଦିନରୁ ବିଭିନ୍ନ ପ୍ରକାରର ଅନୁଭୂତି ବିଭିନ୍ନ ବିଷୟରେ ଥିଲା । ସେ ସ୍କୁଲରେ ଭଲ ପାଠ ପଢୁ ନଥିଲେ ମଧ୍ୟ ତାଙ୍କ ପ୍ରତି ସମସ୍ତଙ୍କର ସ୍ନେହ ଆଦର ଥିଲା ।

ହେମିଂଓ୍ୱେ ଜଣେ ଭଲ ଶିକାରୀ ଥିଲେ । ପିଲା ଦିନରୁ ତାଙ୍କର ଶିକାର କରିବା ପାଇଁ ଭରି ଝୁଙ୍କ୍ । ଆମ ଦେଶର ରଜା ମହାରଜାମାନେ ଏବଂ ଯୁବରଜମାନେ ଶିକାର କରିବାକୁ ବଣକୁ ଯାନ୍ତି । ସେମାନଙ୍କର ଏହା ଏକ ଆନନ୍ଦ । ୟୁରୋପ ଓ ଆମେରିକା ମହାଦେଶର ଲୋକେ ମଧ୍ୟ ଶିକାର କରିବାପାଇଁ ଭଲ ପାନ୍ତି; ସେଥିପାଇଁ କାହିଁ କେତେ ଦୂରରୁ ସେମାନେ ଆଫ୍ରିକାର ଜଙ୍ଗଲ ଭିତରକୁ ଯାଇ ଶିକାର ଖୋଜି ବୁଲନ୍ତି ।

ଶିକାର ମଣିଷକୁ ଭରି ଆନନ୍ଦ ଦିଏ । ବଣ ଜଙ୍ଗଲରେ ଲୁଚିଛପି ବୁଲିବାରେ ମଧ୍ୟ ଆନନ୍ଦ ମିଳେ । ଲୁଚିଲୁଚି ବୁଲି ପଶୁ ପକ୍ଷୀମାନଙ୍କୁ ଅନୁସରଣ କରିବା ସମସ୍ତଙ୍କୁ ଆସେ ନାହିଁ । ସେଥିପାଇଁ କେତେ କୌଶଳ ଶିଖିବା ଦରକାରପଡେ । ପଶୁପକ୍ଷୀଙ୍କ ସଙ୍ଗେ ପଶୁପକ୍ଷୀପରି ବଣ ଭିତରେ ବୁଲି ନ ପାରିଲେ ଶିକାର କରିବା ସହଜ ନୁହେଁ । ସେଥିପାଇଁ କେତେ କଷ୍ଟ ସହିବାକୁ ହୁଏ କିନ୍ତୁ ସେ କଷ୍ଟ କଷ୍ଟପରି ଜଣାପଡେ ନାହିଁ । ଶିକାର ହାବୁଡରେ ପଡଗଲେ ଗଛପତ୍ର, କଣ୍ଟା ଲଟାସବୁ ଡେଇଁ ଶିକାରୀ ଶିକାର ପଛେ ପଛେ ଛୁଟେ । ସେ କଷ୍ଟ ତାକୁ ଆନନ୍ଦ ଦିଏ ।

ହେମିଂଓ୍ୱେ ପିଲାଦିନରୁ ଶିକାରୀ । ତାଙ୍କ ବାପା ଜଣେ ନାମଜାଦା ଶିକାରୀ ଥିଲେ । ତାଙ୍କ ଘର ପାଖଆଖରେ ଲୋକେ ତାଙ୍କୁ ଜଣେ ବଡ ଶିକାରୀ ବୋଲି ମାନନ୍ତି । ସେ ଯେତେବେଳେ ବନ୍ଧୁକ ଧରି ବାହାରନ୍ତି ହେମିଂଓ୍ୱେ ମଧ୍ୟ ବାହାରନ୍ତି ବାପାଙ୍କ ସାଥିରେ ଯିବାକୁ । ଅଳ୍ପ ବୟସରେକୁ ସେ ବାପାଙ୍କ ସହିତ ଶିକାର ଖୋଜିବାପାଇଁ ବଣକୁ ଯାଆନ୍ତି । ହେମିଂଓ୍ୱେଙ୍କ ବୟସ ଯେତେବେଳେ ମୋଟେ ଦଶବର୍ଷ ସେତେବେଳେ ଥରେ ବାପାଙ୍କ ସହିତ ସେ ଶିକାରକୁ ବାହାରିଲେ । ମିଚିଗାନ ପ୍ରଦେଶର ଜଙ୍ଗଲରେ ନାନା ପ୍ରକାର ଜନ୍ତୁ ଦେଖାଯାନ୍ତି । ଅନେକ ଅଞ୍ଚଳରୁ ଶିକାରୀମାନେ ସେଠାକୁ ଶିକାର ଖୋଜି ଆସନ୍ତି । ସେଥର ବାପାଙ୍କ ସଙ୍ଗରେ ସେ ବଣରେ ବୁଲିଲେ । ଶିକାର ଖୋଜିବାରେ ଭରି ଦକ୍ଷତା ଦେଖାଇଲେ । ଏ ବନ ଯାତ୍ରାରେ ହେମିଂଓ୍ୱେ ବଡ ଆନନ୍ଦ

ଲାଭ କରିଥିଲେ । ଶିକାର ଖୋଜିବାରେ ତାଙ୍କର ସାହସ ଦେଖି ବାପା ମଧ୍ୟ ଖୁବ ଖୁସିହୋଇ ଥିଲେ । ଜଙ୍ଗଲରୁ ଫେରିବା ପରେ ପୁଅକୁ ପାଖକୁ ଡାକି ଗୋଟିଏ ବନ୍ଧୁକ ଉପହାର ଦେଲେ ।

( ୪ )

ଚଷାର ପୁଅ ଚଷା, କମାରର ପୁଅ କମାର, ବ୍ୟବସାୟୀର ପୁଅ ହେବ ବ୍ୟବସାୟୀ— ଏହି ରୀତି ଆମ ଦେଶରେ ଏପର୍ଯ୍ୟନ୍ତ ପ୍ରାୟ ଚଳିଆସୁଛି । ବାପର ବ୍ୟବସାୟ ପୁଅ କରୁଛି । ଏମିତି କାଳ କାଳ ଧରି ଗୋଟିଏ ଘରର ଗୋଟିଏ ବ୍ୟବସାୟ ପ୍ରାୟ ଲାଗି ରହିଛି । ଆମ ଦେଶର ଲୋକଙ୍କ ଜୀବିକା ଲୋକେ ଜନ୍ମହେବା ସଙ୍ଗେ ସଙ୍ଗେ ଯେମିତି ଧରି ଆସିଛନ୍ତି । ଏହାଦ୍ୱାରା କେତେକ ଦିଗରୁ ପୂର୍ବକାଳରେ ସୁବିଧା ହେଉଥିଲା କିନ୍ତୁ ସେ ସୁବିଧା ଆଉ ଏ ଯୁଗ ପାଇଁ ନୁହେଁ । ସଭ୍ୟ ଉନ୍ନତ ଦେଶମାନଙ୍କରେ ଏ ଜନ୍ମଗତ ଜୀବିକାର ମାର୍ଗ ବଦଳି ଯାଇଛି ।

ସମସ୍ତଙ୍କ ଦେହରେ ସବୁ ଗୁଣ ନଥାଏ । କାହା ଦେହରେ କେଉଁ ଗୁଣ ବେଶି ପରିମାଣରେ ଥାଏ, ଅନ୍ୟ ଗୁଣ ଅଳ୍ପ ପରିମାଣରେ ଥାଏ । ମହାତ୍ମାଗାନ୍ଧି ବଣିଆ ଘରେ ଜନ୍ମ ହୋଇଥିଲେ । ତାଙ୍କଠାରେ ମହାପୁରୁଷ ଗୁଣ ଥିଲା । ସେ ଜଗତକୁ ନୂଆ ପଥ ଦେଖାଇଦେଲେ । ଏହିପରି କେତେ ଲୋକଙ୍କ ଦେହରେ କେତେ ବିଶେଷ ଗୁଣ ଥାଏ । ବିଶେଷ ଗୁଣ ବିକଶିତ ହେବାର ସୁବିଧା ନ ପାଇଲେ ସେ ସେହିପରି ଦବିଯାଏ । ଆମ ଦେଶରେ ଶିକ୍ଷାର ଆୟତନ କମ । ତେଣୁ ବାଳକ ବାଳିକାମାନଙ୍କର ଦେହରେ କାହାଠାରେ କି ବିଶେଷ ଗୁଣ ଅଛି ତାହା ଜାଣି ସେ ଅନୁସାରେ ତାଙ୍କପାଇଁ ଜୀବିକା ଠିକ୍ କରିବା ସୁବିଧା ଘଟେ ନାହିଁ ।

କିନ୍ତୁ ହେମିଂୱେଙ୍କ ଦେଶ କଥା ଅଲଗା । ପିଲାଦିନରୁ ପିଲା ପାଠ ପଢ଼ିବାକୁ ଗଲାବେଳୁ ଶିକ୍ଷକ ଶିକ୍ଷୟିତ୍ରୀ ପିଲାର ମନୋବୃତ୍ତି ପରୀକ୍ଷା କରିବାରେ ଲାଗିଥାନ୍ତି । କାହାର କେଉଁଆଡ଼କୁ ବେଶି ମନ ଅଛି ତାହା ଜାଣି ସେମାନେ ପାଠ ପଢ଼ାଇବାକୁ ଲାଗନ୍ତି । ତା' ଫଳରେ ଯାହାର ଯାହା ଗୁଣଥାଏ ତାହା ପିଲାଦିନରୁ ଜଣା ପଡ଼ିଯାଏ । ବାପ ମା, ଶିକ୍ଷକ, ଶିକ୍ଷୟିତ୍ରୀ, ସରକାର ସମସ୍ତେ ଦେଶର ପିଲାମାନଙ୍କୁ ଠିକ୍ ବାଟରେ ତାଲିମ କରିବାରେ ଲାଗିଯାନ୍ତି । କେଉଁ ବ୍ୟବସାୟ ଧରିଲେ ଭବିଷ୍ୟତରେ ନିଜର, ଜାତିର, ଦେଶର ଉନ୍ନତି କରିପାରିବ, ସେଇ ଜୀବିକାପାଇଁ ତାକୁ ସମସ୍ତେ ସାହାଯ୍ୟ କରନ୍ତି ।

ହେମିଂୱେଙ୍କ ବାପା ଜଣେ ବଡ଼ ଡାକ୍ତର ଥିଲେ । ସେ ଚାହୁଁଥିଲେ ତାଙ୍କ ପୁଅ ତାଙ୍କରି ବ୍ୟବସାୟ ଶିଖୁ ତା'ହେଲେ ଟଙ୍କା ପଇସା ରୋଜଗାର କରିବ ଓ ଜଣେ

ଭଲ ଡାକ୍ତର ହୋଇ ଜନସମାଜର ଉପକାର କରିପାରିବ । ମା'ଙ୍କ ଇଚ୍ଛା ତା' ନଥିଲା । ସେ ସଙ୍ଗୀତକୁ ଭରି ଭଲ ପାଉଥିଲେ । କିଏ କେଉଁଠାରେ ଗୀତଟିଏ ବୋଲିଲେ କାନ ଡେରି ଶୁଣୁଥିଲେ । ହେମିଂଓ୍ୱେ ମଧ୍ୟ ପିଲାଦିନରୁ ଗୀତ ବୋଲିବା ଜାଣିଥିଲେ । ତେଣୁ ମା' ଭାବୁଥିଲେ – ମୋ ପୁଅ ସଙ୍ଗୀତ ବିଦ୍ୟାରେ ଲାଗିପଡ଼ ଜଣେ ବଡ ଗାୟକ ହୁଅନ୍ତା ।

କିନ୍ତୁ ହେମିଂଓ୍ୱଙ୍କ ଇଚ୍ଛା ଅଲଗା ଥିଲା । ସେ ଗାୟକ ହେବାକୁ ଚାହୁଁ ନଥିଲେ କି ଡାକ୍ତର ହେବାକୁ ଆଗ୍ରହ ଦେଖାଉ ନଥିଲେ । ସେ ଇଚ୍ଛା କରୁଥିଲେ ଯେ, ଜଣେ ଭଲ ଲେଖକ ହେବେ । ପତ୍ର ପତ୍ରିକାରେ ତାଙ୍କର ଲେଖାଗୁଡ଼କ ବାହାରିବ । ସମସ୍ତେ ମନ ଦେଇ ତାଙ୍କ ଲେଖାଗୁଡକ ପଢ଼ିବେ । ସ୍କୁଲରେ ପାଠ ପଢ଼ବା ବେଳେ ସେ ନିଜେ ମଧ୍ୟ ଏହି କଥା ସମୟେ ସମୟରେ କହୁଥିଲେ ।

ଶେଷରେ ତାହାହିଁ ହେଲା । ପିଲା ଦିନରୁ ଅନ୍ୟାନ୍ୟ ବହି ପଢ଼ିବା ଏବଂ ନାନା କଥା ଶୁଣି ମନେ ରଖିବାରେ ସେ ଭାରି ଧୁରନ୍ଧର ଥିଲେ । ସେତିକିବେଳୁ ଶିକ୍ଷକମାନଙ୍କର ସାହାଯ୍ୟ ସହାନୁଭୂତି ପାଇ ତାଙ୍କର ଲେଖିବା ଶକ୍ତି ବଢ଼ିଲା । ତେଣୁ ସେ ଆଜି ପୃଥିବୀ ବିଖ୍ୟାତ ଲେଖକ ରୂପେ ପରିଚିତ ।

( ୬ )

ପ୍ରଥମ ପୃଥିବୀ ମହାସମର ୧୯୧୪ ମସିହାରେ ଆରମ୍ଭ ହେଲା । ଚାରିବର୍ଷରୁ ବେଶିକାଳ ଏ ଯୁଦ୍ଧ ଚାଲିଥାଏ । ୧୯୧୮ ମସିହାରେ ଯୁଦ୍ଧ ସରିଲା । ଏ ଯୁଦ୍ଧରେ ଗୋଟିଏ ପକ୍ଷରେ ଜର୍ମାନୀ ଦେଶ, ଅନ୍ୟ ପକ୍ଷରେ ଇଂରେଜ ସରକାର; କିନ୍ତୁ ଆମେରିକା ଦେଶ ଯୁଦ୍ଧରେ ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ଯୋଗ ଦେଇ ନଥିଲା । ୟୁରୋପ ମହାଦେଶର ପ୍ରତ୍ୟେକ ଦେଶ ଏ ଯୁଦ୍ଧର ଭୟରେ ଜଡ଼ସଡ ଥାଆନ୍ତି ।

ସେତେବେଳକୁ ଆମ ଦେଶ ଇଂରେଜ ସରକାରଙ୍କ ଅଧୀନରେ । ଆମ ଦେଶର ଲୋକେ ଇଚ୍ଛା ନ କରନ୍ତୁ ପଛକେ, ଇଂରେଜ ସରକାର ଟାଣିଟାଣି ନେଇ ଆମ ଦେଶ ଲୋକଙ୍କୁ ଯୁଦ୍ଧରେ ଭର୍ତ୍ତି କଲେ ।

୧୯୧୭ ମସିହାରେ ହେମିଂଓ୍ୱେ ବି. ଏ ପାଶ କଲେ । ବି. ଏ. ପାଶ କରିବା ପରେ କି କାମ କରିବେ କିଛି ଠିକ୍ କରି ନଥାନ୍ତି । କିନ୍ତୁ କଲେଜରେ ପଢ଼ବା ବେଳୁ ତାଙ୍କର ଲେଖାଲେଖି ପ୍ରତି ଭାରି ଆଗ୍ରହ ଥାଏ । ପାଶ୍ କରିବା ସଙ୍ଗେ ସଙ୍ଗେ ତାଙ୍କୁ ଗୋଟିଏ ଚାକିରି ମିଳିଗଲା । ସେଇ ବର୍ଷ ସେ ଗୋଟିଏ ପତ୍ରିକାର ସମ୍ପାଦକ ରୂପେ ନିଯୁକ୍ତି ପାଇଲେ । ସେ ପତ୍ରିକାଟି ଆମେରିକାର ଗୋଟିଏ ଭାରି ଖ୍ୟାତନାମା ପତ୍ରିକା —ତା'ର ନାମ "କ୍ୟାନସାସ ସିଟି ଷ୍ଟାର" । ପତ୍ରିକାର ସାମ୍ବାଦିକତା କରିବାରେ ତାଙ୍କର

ବେଶ ଖ୍ୟାତି ବଢ଼ିଲା । କିନ୍ତୁ "କ୍ୟାନସାସ ସିଟି ଷ୍ଟାର" ପତ୍ରିକାର ସାମ୍ବାଦିକ ରୂପେ ସେ ବେଶିଦିନ ରହିଲେ ନାହିଁ ।

ୟୁରୋପ ମହାଦେଶର ଇଟାଲୀ ଦେଶ ପ୍ରଥମ ପୃଥିବୀ ମହାସମରରେ ଯୋଗ ଦେଇ ସେତେବେଳକୁ ଖୁବ୍ ଦୁର୍ବଳ ହୋଇଯାଇଥାଏ । ଅନେକ ଦେଶରୁ ସ୍ୱେଚ୍ଛାସେବକମାନେ ଇଟାଲୀକୁ ସାହାଯ୍ୟ କରିବାପାଇଁ ଆସୁଥାନ୍ତି । ହେମିଂଓ୍ୱେ ଏହି ସମୟରେ ଜାହାଜରେ ଇଟାଲୀ ଗଲେ । ସେ ଇଟାଲୀ ଦେଶର ଅବସ୍ଥା ଦେଖି ବଡ଼ ଦୁଃଖିତ ହେଲେ । ଇଟାଲୀର ଯୁଦ୍ଧାହତ ବ୍ୟକ୍ତିମାନଙ୍କୁ ଆଣିବାପାଇଁ ଯେଉଁ ମୋଟର ଚାଳକ ନିଯୁକ୍ତ ଥିଲା, ସେଥିରୁ ଗୋଟିଏ ମୋଟରରେ ସେ ମୋଟର ଚାଳକ ରୂପେ ରହିଲେ । ସେଠାରେ ଥିବା ସମୟରେ ସେ ଯୁଦ୍ଧର ବିଭୀଷିକା ଦେଖିବାକୁ ପାଇଲେ । କିନ୍ତୁ ସେ ଦେଶରେ ସେ ବେଶୀ ଦିନ ରହିପାରିଲେ ନାହିଁ । ଗୋଟିଏ ଦୁର୍ଘଟଣାରେ ତାଙ୍କର ଗୋଡ଼ ଦୁଇଟିରେ ଆଘାତ ଲାଗିଲା । ସେ ଆଉ କାମ କରିପାରିଲେ ନାହିଁ । ତେଣୁ ବାଧ୍ୟହୋଇ ସେ ଅବସ୍ଥାରେ ନିଜ ଦେଶକୁ ଫେରିଲେ । ଏହି ସମୟକୁ ତାଙ୍କର ବୟସ ମୋଟେ ୧୯ ବର୍ଷ । କିନ୍ତୁ ଏତେ ଅଳ୍ପ ବୟସରେ ସେ ଆହତ ସୈନ୍ୟମାନଙ୍କୁ ସାହାଯ୍ୟ କରିବାରେ ଯେଉଁ ଦକ୍ଷତା ଦେଖାଇଥିଲେ ସେଥିରେ ସବୁ ପତ୍ରିକା ତାଙ୍କର ସୁନାମ ଗାଇଥିଲେ ।

( ୬ )

"ଟରଣ୍ଟୋ ଷ୍ଟାର" ଆମେରିକାର ଗୋଟିଏ ନାମଜାଦା ପତ୍ରିକା । ଆମେରିକାରେ ଟରଣ୍ଟୋ ବୋଲି ଗୋଟିଏ ଦେଶ । ସେ ଦେଶର ଏକ ବଡ଼ ସହରରୁ ଏ ପତ୍ରିକାଟି ବାହାରେ । ହେମିଂଓ୍ୱେ ଇଟାଲୀ ଯାଇ ସାମ୍ବାଦିକ ଭାବରେ ବେଶି ନାଁ କରିଥିଲେ । ସେ ଦୁର୍ଘଟଣାର ଆଘାତରୁ ଆରୋଗ୍ୟ ହେବା ପରେ ପରେ ଏ "ଟରଣ୍ଟୋ ଷ୍ଟାର" ପତ୍ରିକାର ସାମ୍ବାଦିକ ଭାବରେ କାମ କରିବାପାଇଁ ରାଜି ହେଲେ । ୧୯୨୦ ମସିହାରେ ସେ ଏ କାର୍ଯ୍ୟ ଗ୍ରହଣ କଲେ । ତେଣୁ ତାଙ୍କୁ ପୁଣି ନିଜ ଦେଶ ଛାଡ଼ିବାକୁ ହେଲା । ପୂର୍ବ ଦେଶମାନଙ୍କରେ ସାମ୍ବାଦିକତା କରିବାପାଇଁ ସେ ବିଦେଶ ଯାତ୍ରା କଲେ ।

ଏହି ସମୟରେ ସେ ୟୁରୋପର କେତୋଟି ଦେଶ ବୁଲିବାର ସୁଯୋଗ ପାଇଲେ । ସେ ଦେଶ ବୁଲିବାବେଳେ ବିଭିନ୍ନ ସ୍ଥାନର ରାଜନୀତି ଓ ସାହିତ୍ୟ ବିଷୟରେ ମଧ୍ୟ ସଂପର୍କ ରଖୁଥିଲେ । ତାଙ୍କର ସାହିତ୍ୟ ଚର୍ଚ୍ଚା ଆଗରୁ ଥିଲା । ସେଥି ସଙ୍ଗେ ସଙ୍ଗେ ସେ ଅନ୍ୟାନ୍ୟ ସାହିତ୍ୟାଲୋଚନାର ସୁବିଧା ମଧ୍ୟ ପାଇଲେ । "ଟରଣ୍ଟୋ ଷ୍ଟାର" ପତ୍ରିକାର ସାମ୍ବାଦିକ କାର୍ଯ୍ୟରେ ସେ ବର୍ଷେ କାଳ ରହିଥିଲେ । ୧୯୨୧ ମସିହା ବେଳକୁ ସେ ଏ କାର୍ଯ୍ୟ ଛାଡ଼ିଦେଲେ ।

ସେତେବେଳେ ଗୋଟିଏ ସାମ୍ବାଦିକ ସଙ୍ଗଠନ ସମଗ୍ର ପୃଥିବୀପାଇଁ କାର୍ଯ୍ୟ କରୁଥିଲା । ପୃଥିବୀର ବିଭିନ୍ନ ଦେଶର ଖବର ସଂଗ୍ରହ କରି ସେ ବିଭିନ୍ନ ପତ୍ରିକାକୁ ଯୋଗାଉଥିଲେ । ସେ ସଙ୍ଗଠନର ପ୍ରତିନିଧି ପ୍ରାୟ ପ୍ରତ୍ୟେକ ଦେଶରେ ରହୁଥିଲେ । ସଙ୍ଗଠନର ନାମ "ଆନ୍ତର୍ଜାତିକ ସଂବାଦ ପରିବେଷଣ ଅନୁଷ୍ଠାନ" । ସେ ଏହି ଅନୁଷ୍ଠାନର ଜଣେ ପ୍ରତିନିଧି ଭାବରେ "ପ୍ୟାରିସ" ସହରରେ ଅବସ୍ଥାନ କଲେ ।

ଏ ଯୁଗରେ ସାମ୍ବାଦିକମାନଙ୍କର ପ୍ରାଧାନ୍ୟ ସବୁଠୁଁ ବେଶି । ସାମ୍ବାଦିକମାନଙ୍କ ପରିଶ୍ରମ ଫଳରେ ଆମେ ଆଜି ଘରେ ଘରେ ବସି ସମଗ୍ର ଜଗତର ଖବର ପାଇ ପାରୁଛେ । ଖବର କାଗଜ ନ ପଢ଼ିଲେ ଆମର ଶିକ୍ଷା ସଂପୂର୍ଣ୍ଣ ହେଉନାହିଁ । ସାଧାରଣ ଲୋକଙ୍କଠାରୁ ଆରମ୍ଭ କରି ନେତା, ସାହିତ୍ୟିକ, ରାଜନୀତିଜ୍ଞ ସମସ୍ତେ ଖବର କାଗଜରୁ ହିଁ ନାନା ଜ୍ଞାନ ସଂଗ୍ରହ କରୁଛନ୍ତି । ଅନ୍ୟ କୌଣସି ଯୁଗରେ ଖବର କାଗଜ ଜମ୍ମା ଖବର ଦାତାଙ୍କର ଏତେ ଆବଶ୍ୟକତା ନଥିଲା । ବଡବଡ ରାଜନୀତିଜ୍ଞମାନେ ଅନେକ ପ୍ରଥମେ ସାମ୍ବାଦିକ ରୂପରେ ସେମାନଙ୍କର ରାଜନୀତିକ ଜୀବନ ଆରମ୍ଭ କରିଥାନ୍ତି । ନୋବେଲ ପ୍ରାଇଜ ବିଜେତା ହେମିଂୱେ ତାଙ୍କର କର୍ମମୟ ଜୀବନ ପ୍ରଥମେ ସାମ୍ବାଦିକ ଭାବରେ ଆରମ୍ଭ କରିଥିଲେ ।

( ୮ )

ଆନ୍ତର୍ଜାତିକ ସଂବାଦ ପରିବେଷଣ ସଙ୍ଗଠନର ପ୍ରତିନିଧି ଭାବରେ ସେ ଫ୍ରାନ୍‌ସର ରାଜଧାନୀ ପ୍ୟାରିସ ସହରରେ ରହିଲେ । ପ୍ୟାରିସ ସହର ଅତି ସୁନ୍ଦର । ସେ ସହର ତାଙ୍କୁ ଭଲ ଲାଗିଲା । ସେଇଠି ଥିବାବେଳେ ଜଣେ ମହିଳାଙ୍କ ସଙ୍ଗରେ ତାଙ୍କର ସାକ୍ଷାତ ହେଲା । ସେହି ମହିଳାଙ୍କର ନାମ ହାଡଲି ରିଚାର୍ଡସନ । ତାଙ୍କର ପିଲାଦିନ ଆମେରିକାରେ କଟିଥିଲା । ସେ ପିଲାଦିନରୁ ହେମିଂୱେ ମଧ୍ୟ ହାଡଲିଙ୍କୁ ଚିହ୍ନିଥିଲେ । ପିଲାଦିନରେ ସେମାନେ କେତେଦିନ ମିଳିମିଶି କେତେ ଖେଳ ଖେଳିଛନ୍ତି । ସେଇ ଖେଳିବା ବେଳୁ ଦୁହେଁ ଦୁହିଁଙ୍କୁ ଭଲ ପାଇଆସିଛନ୍ତି । ହେମିଂୱେଙ୍କ ମନରେ ହାଡଲିଙ୍କୁ ବିବାହ କରିବାପାଇଁ ପ୍ରବଳ ଇଚ୍ଛାଥିଲା; କିନ୍ତୁ ସେ ଦୁହେଁ ପେ ଏତେ ଦୂରରେ, ଅଭଥରେ ଦୁହେଁ ଦୁହିଁଙ୍କୁ ଏ ଯୌବନ ବୟସରେ ଭେଟିବେ ଏକଥା କେହି ଭାବି ନ ଥିଲେ ।

ପ୍ୟାରିସ ପରି ସହର, ସାରା ସଂସାରରେ ଏମିତି ସୁନ୍ଦର ସହର ଆଉ ନାହିଁ । ପ୍ୟାରିସ ପୃଥିବୀର ନନ୍ଦନକାନନ । ସେତେବେଳକୁ ହେମିଂୱେଙ୍କ ବୟସ ୨୨ ବର୍ଷ, ସେ ଦେଶପାଇଁ ବିବାହ ବୟସ ହୋଇଥାଉ କି ନଥାଉ; ଦୁହେଁ ଦୁହିଁଙ୍କୁ ଆନନ୍ଦରେ ଗ୍ରହଣ

କରିନେଲେ । କିଛିଦିନ ପରେ ନିୟମାନୁସାରେ ସେମାନେ ବିବାହ ବନ୍ଧନରେ ଆବଦ୍ଧ ହେଲେ । ପ୍ୟାରିସର ନନ୍ଦନକାନନ ଭିତରେ ଦୁହେଁ ଆନନ୍ଦରେ କାଳ କାଟିବାକୁ ଲାଗିଲେ । କେତେଦିନ ପରେ ତାଙ୍କର ଗୋଟିଏ ପୁତ୍ର ଜାତ ହେଲା । ସେ ପୁତ୍ରଟିର ନାମ ଦେଲେ "ଜନ୍" ।

ଏହିପରି ୫।୬ ବର୍ଷ ଚାଲିଗଲା । ଦୁହେଁ ଦୁହିଁଙ୍କୁ ସାହାଯ୍ୟ କରୁଥାନ୍ତି । ହାଡ଼ଲି ଅନେକ ସମୟରେ ଲେଖାଲେଖି ଦିଗରେ ହେମିଂଓ୍ୱେଙ୍କୁ ମଧ୍ୟ ସାହାଯ୍ୟ କରିବାରେ ହେଳା କରନ୍ତି ନାହିଁ । କିନ୍ତୁ ୧୯୨୬ ମସିହାରେ ଦୁହିଁଙ୍କ ହୃଦୟରେ କି ଭାବ ଆସିଲା କେଜାଣି, ପରସ୍ପର ପ୍ରତି କ୍ରମେ ସ୍ନେହଭାବ କମିଆସିଲା । ଦୁହେଁ ଶେଷକୁ ପରସ୍ପରକୁ ଛାଡ଼ପତ୍ର ଦେବେ ବୋଲି ଠିକ୍ କଲେ । ତାହାହିଁ ହେଲା । ତାଙ୍କ ଦେଶର ନିୟମ ଅନୁସାରେ ଏଥିପାଇଁ କୌଣସି ବାଧା ନ ଥିଲା । ପୁତ୍ର ଜନ୍ ହେମିଂଓ୍ୱେଙ୍କ ପାଖରେ ରହିଲେ ।

ତା'ପରେ ବର୍ଷେ କାଳ ଚାଲିଗଲା । ହେମିଂଓ୍ୱେ ପ୍ୟାରିସ ସହର ଛାଡ଼ିଲେ । ଆମେରିକା ଫେରିଲେ । ଆମେରିକାର ଫୋରିଡ଼ା ଦେଶର କିଓ୍ୱେଷ୍ଟ ବୋଲି ଗୋଟିଏ ସହରକୁ ଗଲେ । ସେଠାର ପ୍ରାକୃତିକ ଦୃଶ୍ୟ ତାଙ୍କୁ ଭାରି ଭଲ ଲାଗିଲା । ସେ ନିଜେ ଗୋଟିଏ ଘର କିଣି ସେଠାରେ ରହିବେ ବୋଲି ବିଚାରିଲେ । କିଛିଦିନ ପରେ ତାଙ୍କର ମତାନୁଯାୟୀ ଗୋଟିଏ ଘର ମିଳିଲା ।

ସେଇ କିଓ୍ୱେଷ୍ଟ ସହରରେ ତାଙ୍କର ଦ୍ୱିତୀୟ ବିବାହ ହେଲା । ପଲିନା ଫିଫର ବୋଲି ଜଣେ ଭଦ୍ରମହିଳା ସେଇ ସହରରେ ଥାଆନ୍ତି । ଆମେରିକାର ବିଖ୍ୟାତ ପତ୍ରିକାଗୁଡ଼ିକରେ ତାଙ୍କର ଲେଖା ବାହାରେ । "ଭୋଗ" ବୋଲି ଗୋଟିଏ ପତ୍ରିକାକୁ ସେ ନିୟମିତ ଭାବରେ ଲେଖା ପଠାନ୍ତି । ଅନ୍ୟାନ୍ୟ ସାହିତ୍ୟିକ ଲେଖକମାନଙ୍କ ପଲିନ୍ ଫିଫରଙ୍କର ନାମ ମଧ୍ୟ ଗଣାଯାଏ । ହେମିଂଓ୍ୱେ ଏହି ପତ୍ରିକାର କେନ୍ଦ୍ରରେ ଭାବରେ ପଲିନଙ୍କୁ ଚିହ୍ନିଲେ । ଦୁହିଁଙ୍କର ସାକ୍ଷାତ ବେଳେ ସାହିତ୍ୟ ବିଷୟରେ ଆଲୋଚନା ହୁଏ । ପଲିନଙ୍କର ସାହିତ୍ୟ ଆଲୋଚନାରେ ହେମିଂଓ୍ୱେ ବଡ଼ ଆନନ୍ଦିତ ହେଲେ ।

ଦୁହିଁଙ୍କ ମଧ୍ୟରେ ଆଳାପ ବଢ଼ିଲା, ଶେଷରେ ଦୁହେଁ ବିବାହ କରିବାକୁ ଠିକ୍ କଲେ । ବିବାହ ପରେ ହେମିଂଓ୍ୱେ ଓ ପଲିନ୍ ନାନାପ୍ରକାର ସାହିତ୍ୟ ଆଲୋଚନାରେ ଲାଗିରହିଲେ । ସାହିତ୍ୟ ଗବେଷଣା ପାଇଁ ଦୁହିଁଙ୍କୁ ସୁବିଧାହେଲା ।

କିଛିଦିନ ପରେ ପଲିନଙ୍କର ଦୁଇଟି ପୁତ୍ର ସନ୍ତାନ ଜାତ ହେଲେ । ହେମିଂଓ୍ୱେ ପରିବାର ସହିତ ଆନନ୍ଦରେ କାଳ କାଟିଲେ । ସାହିତ୍ୟ ସାଧନାରୁ ସେ କେବେହେଲେ ବିରତ ନ ଥିଲେ ।

୧୯୩୬ ମସିହାରେ ସ୍ପେନ ଦେଶରେ ଅନ୍ତର୍ବିପ୍ଳବ ହେଲା । ସେ ଦେଶରେ ରାଜା ଓ ପ୍ରଜାଙ୍କ ଭିତରେ ମନୋମାଳିନ୍ୟ ଘଟିଲା । ଅନେକ ଦିନ ଧରି ଏ ବିପ୍ଳବ ଚାଲିଲା । ଏହି ବିପ୍ଳବ ଭିତରେ ଦୁଇ ବିପ୍ଳବକାରୀ ଦଳଙ୍କ ମଧ୍ୟରେ ଯୁଦ୍ଧ ଲାଗିଥାଏ ଆମେରିକାର "ଟରେଣ୍ଟୋ ଷ୍ଟାର" ପତ୍ରିକା ହେମିଂୱେଙ୍କୁ ପ୍ରତିନିଧି ଭାବରେ ସ୍ପେନ ପଠାଇଲେ । ସେ ସେଠାରେ ଏ ବିପ୍ଳବର ପ୍ରତ୍ୟକ୍ଷଦର୍ଶୀ ଭାବରେ ସମ୍ବାଦ ପତ୍ରକୁ ସମ୍ବାଦ ପଠାଇବେ ବୋଲି ସ୍ପେନ ଗଲେ ।

ସ୍ପେନରେ ରହୁଥିବା ସେତେବେଳେ କୁମାରୀ ମାର୍ଥା ଗେଲହର୍ଣ୍ଣଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଗେଲହର୍ଣ୍ଣ ଜଣେ ଉତ୍ତମ ଲେଖିକା । ହେମିଂୱେ ଓ ଗେଲହର୍ଣ୍ଣଙ୍କ ମଧ୍ୟରେ ସଦ୍ଭାବ ବଢ଼ିଲା । କିଛିଦିନ ପରେ ହେମିଂୱେ ଗେଲହର୍ଣ୍ଣଙ୍କୁ ସ୍ପେନ ଦେଶରେ ବିବାହ କଲେ ।

ଏ ବିବାହର କିଛିଦିନ ପରେ ସେ ସ୍ପେନ ଛାଡ଼ିଲେ । ସ୍ପେନରୁ ସେ ଗଲେ ଚାଇନା । ଦେଶରେ ମଧ୍ୟ ସେତେବେଳେ ବିପ୍ଳବ ଚାଲିଥାଏ । ଚାଇନାର ବିପ୍ଳବ ସ୍ପେନ୍ ଦେଶର ବିପ୍ଳବ ଠାରୁ ବେଶୀ କୁହୁଳୁଥାଏ । ଏକ ଦିଗରେ କମ୍ୟୁନିଷ୍ଟ ଲାଲସେନା, ଅନ୍ୟ ଦିଗରେ ଚ୍ୟାଙ୍ଗ କେସକ କମ୍ୟୁନିଷ୍ଟମାନଙ୍କର ନେତାଥାନ୍ତି—ମାଓ ସେ ତୁଂ । କିନ୍ତୁ ତାଙ୍କୁ କେହି ଜାଣିବାର ବା ଧରିବାର ଉପାୟ ନଥାଏ । ଦେଶସାରା ଏ ବିପ୍ଳବ ନିଆଁ କୁହୁଳୁ ଥାଏ । ସ୍ଥାନେ ସ୍ଥାନେ ମଝିରେ ମଝିରେ ଲଢ଼େଇ ବି ଚଳେ । କମ୍ୟୁନିଷ୍ଟ ମାନେ ଚାଇନା ଦେଶର ବିଭିନ୍ନ ଗାଁରେ ସୈନ୍ୟ ଠିଆରି କରିବାରେ ଲାଗିଥାନ୍ତି । ଚ୍ୟାଙ୍ଗ କେସାକ୍ କମ୍ୟୁନିଷ୍ଟମାନଙ୍କୁ ଦମନ କରିବା ପାଇଁ ନାନାପ୍ରକାର ଚେଷ୍ଟା କରୁଥାନ୍ତି ।

ଏ ନବବିବାହିତ ସ୍ୱାମୀ ସ୍ତ୍ରୀ ଏଇ ଅବସ୍ଥାରେ ଏକ ବିପ୍ଳବ ଭୂମିରୁ ଅନ୍ୟ ଏକ ବିପ୍ଳବ ଭୂମିକୁ ଗଲେ । ସେମାନେ ଚାଇନା ଦେଶର ବିଭିନ୍ନ ସ୍ଥାନ ଭ୍ରମଣ କରିବାରେ ଲାଗିଲେ । ଚାଇନା ଦେଶର ଲୋକଙ୍କର ଆଚାର ବ୍ୟବହାର ରୀତିନୀତି ମଧ୍ୟ ବୁଝିଲେ । ଏହି ସମୟରେ ସେ ସାମ୍ବାଦିକତା ମଧ୍ୟ କରୁଥିଲେ । ବିଭିନ୍ନ ସ୍ଥାନରୁ ବିପ୍ଳବର ଖବର ସେ ଆମେରିକାର ଅନେକ ପତ୍ର ପତ୍ରିକାକୁ ଯୋଗାଉଥିଲେ । ତିନି ଚାରି ବର୍ଷକାଳ ଏହିପରି ଭାବରେ ବୁଲିବା ସମୟରେ ସେ କେତେଗୁଡ଼ାଏ ଲେଖାଲେଖି କରୁଥିଲେ । ସାମୟିକ କେତେକ ଲେଖା ପତ୍ରିକାରେ ବାହାରୁଥିଲା । କିନ୍ତୁ ଅଧିକାଂଶ ଲେଖା ପାଣ୍ଡୁଲିପି ଆକାରରେ ଥିଲା ।

( ୯ )

ମଣିଷ ଜୀବନ ବିପଦର ଘର । କେତେବେଳେ କ'ଣ ହେବ କିଏ ବା କହିପାରିବ ? ଯେତେ ବିପଦ ଅଛି, ମଣିଷ ଜୀବନକୁ କେହି ଛାଡ଼ନାହିଁ । କେତେ କେତେ ନୂଆ

ନୂଆ ପ୍ରକାର ବିପଦ ମଧ୍ୟ ମଣିଷକୁ ଘେରେଇ କରି ରଖୁଛି । ମଣିଷ ଯାହାକୁ ସମ୍ପଦ ବୋଲି ଭାବୁଛି, ତାହାରି ଭିତରେ ବିପଦ ଲୁଚିରହିଛି । ମଣିଷ ତିଆରି କରୁଛି କେତେ କେତେ ପ୍ରକାର ନୂଆ ସଂପଦ, ଯାହାକି ପୃଥିବୀ ନୂଆକରି ଦେଖୁଛି । କିନ୍ତୁ ତାରି ଭିତରୁ ପୁଣି ବାହାରୁଛି—ବିପଦର ଉପାୟ, ହେଲେ ବିପଦ ଆସୁଛି ବୋଲି ମଣିଷ ଏ ପର୍ଯ୍ୟନ୍ତ କେବେ ବିପଦର ଉପରେ ପରାସ୍ତ ହୋଇନାହିଁ । ତା' ହୋଇଥିଲେ ମଣିଷର ସଭ୍ୟତା ସେଇ ପୁରୁଣା ଯୁଗର ହୋଇ ରହିଥାନ୍ତା । ହେମିଂୱେଙ୍କ ଭଷାରେ କହିବାକୁ ଗଲେ—ମଣିଷ ଧ୍ୱଂସ ପାଇପାରେ, କିନ୍ତୁ ସେ ପରାସ୍ତ ହେବ ନାହିଁ ।

୧୯୪୪ ମସିହା । ସେତେବେଳକୁ ଜର୍ମାନୀର ତୋପଜମାଣ ସମଗ୍ର ପୃଥିବୀକୁ ଭୟ ବିହ୍ୱଳିତ କରି ପକେଇଛି । ଜର୍ମାନୀର ନାଜୀ ଶାସନ ବିରୁଦ୍ଧରେ ସବୁଦେଶ ଏକଜୁ ହୋଇ ଯୁଦ୍ଧରେ ମନପ୍ରାଣ ଢାଳି ଦେଇଥାନ୍ତି । ନାଜି ଅଧିକାର ଚୂର୍ଣ୍ଣ ନ କଲେ ଆଉ ରକ୍ଷା ନାହିଁ । କେଉଁଠି ମୁହାଁମୁହିଁ ଯୁଦ୍ଧ ଚାଲିଛି, କେଉଁଠି ରାଜନୀତିର ବିରୁଦ୍ଧରେ ପ୍ରଚାର ଚାଲିଛି । ଜର୍ମାନୀର ସବୁଠୁ ବେଶୀ ଦୃଷ୍ଟି ପଡ଼ୁଛି ଇଂଲଣ୍ଡ ଉପରେ । ଇଂଲଣ୍ଡର ଜନସାଧାରଣ, ସରକାର ଇଂଲଣ୍ଡ ଦେଶକୁ ରକ୍ଷା କରିବା ପାଇଁ ସବୁ ପ୍ରକାର କଳକୌଶଳ ପ୍ରୟୋଗ କରିବାରେ ଲାଗିଥାନ୍ତି । ଜର୍ମାନୀର ବେଶୀ ରାଗ ଇଂଲଣ୍ଡର ରାଜଧାନୀ ଲଣ୍ଡନ ସହର ଉପରେ । ତାକୁ ରକ୍ଷା କରିବାପାଇଁ ନାନା ଉଦ୍ୟମ ଲାଗିଛି । ଲଣ୍ଡନ ସହର ପୃଥିବୀର ବୃହତ୍ତମ ସହର । ନାନା ରଙ୍ଗର ଆଲୋକମାଳାରେ ସହରଟି ଦେବପୁରୀ ପରି ଶୋଭା ପାଉଥାଏ । କିନ୍ତୁ ଏ ଯୁଦ୍ଧ ସମୟରେ ଘନ ଅନ୍ଧକାରରେ ସହର ବୁଡ଼ିରହିଛି ।

ସେତେବେଳକୁ ହେମିଂୱେ ଯାଇଥାନ୍ତି ଇଂଲଣ୍ଡ । ସେ ଲଣ୍ଡନ ସହରରେ ରହୁ-ଥାନ୍ତି । ସଂବାଦ ଯୋଗାଇବା କାର୍ଯ୍ୟରେ ତାଙ୍କୁ ସମୟ ନଥାଏ । ଦିନେ ରାତିରେ କୌଣସି ଦରକାରୀ କାର୍ଯ୍ୟରେ ସେ ବାହାରିଛନ୍ତି, ମୋଟର ସାଇକେଲ ଯାଇ ପଶିଲା ଗୋଟାଏ ପୋଖରୀ ଭିତରେ । ଭାଗ୍ୟକୁ ବିଶେଷ କିଛି ଆଘାତ ହୋଇ ନାହିଁ । ପାଣିରେ ବୁଡ଼ୁବୁଡ଼ୁ ହୋଇ ବାହାରିଲେ । ଏକ ଦୁର୍ଘଟଣାରୁ ରକ୍ଷା ପାଇଲେ ।

( ୧୦ )

ହେମିଂୱେ ଥରେ ଆଫ୍ରିକାକୁ ଯାଇଥିଲେ । ଆଫ୍ରିକାର ଘନ ଜଙ୍ଗଲ ଅଞ୍ଚଳରେ ସେ ଉଡ଼ାଜାହାଜରେ ବୁଲୁଥିଲେ । ହଠାତ୍ ଏହି ସମୟରେ ଏକ ଦୁର୍ଘଟଣା ଘଟିଲା । ଉଡ଼ାଜାହାଜଟି ଉପରେ ବେଶ ସୁବିଧାରେ ଉଡୁଥିଲା । କିନ୍ତୁ କ'ଣ ହେଲା କେଜାଣି, ତାହା ତଳକୁ ଖସିପଡ଼ିଲା । ଏମିତ ଉଡ଼ାଜାହାଜ ବିପଦରୁ ରକ୍ଷା ପାଇବା

ବଡ ଭାଗ୍ୟର ବିଷୟ, ହେଲେ ତାଙ୍କ ଦେହରେ ଏ ଆଘାତର ଗୋଟାଏ ବଡ଼ ଦାଗ ରହିଗଲା । ହେମିଂୱେଙ୍କ ଦେହର ନାନା ସ୍ଥାନରେ ଆଘାତ ହୋଇଗଲା । ସଙ୍ଗେ ସଙ୍ଗେ ତାଙ୍କୁ ଡାକ୍ତରଖାନାକୁ ନିଆଗଲା । କେତେକ ଦିନ ଡାକ୍ତରଖାନାରେ ପଡ଼ି ରହିବା ପରେ କ୍ରମେ କ୍ରମେ ସେ ଆରୋଗ୍ୟଲାଭ କଲେ ।

ହେମିଂୱେଙ୍କ ଜୀବନରେ ସେ ଏହିପରି ତିନିଥର ଉଡ଼ାଜାହାଜ ଦୁର୍ଘଟଣାର ସମ୍ମୁଖୀନ ହୋଇଥିଲେ । ଦ୍ୱିତୀୟଥର ଦୁର୍ଘଟଣା ବିଶେଷ ସାଙ୍ଘାତିକ ନୁହେଁ, କିନ୍ତୁ ତୃତୀୟ ଥର ଆଘାତରୁ ସେ ଯେ, ରକ୍ଷା ପାଇଗଲେ, ତାହା ତାଙ୍କ ପକ୍ଷରେ ଖାଲି ନୁହେଁ, ସମଗ୍ର ପୃଥିବୀ ପକ୍ଷରେ ଭାଗ୍ୟର କଥା । ସେଥରକ ଦୁର୍ଘଟଣାରୁ ବଞ୍ଚି ନ ଥିଲେ ଆଜି ପୃଥିବୀ ହେମିଂୱେଙ୍କର ଗୁଣଗାନ କରିବାର ସୁଯୋଗ ପାଇ ନଥାନ୍ତା ।

ଦ୍ୱିତୀୟଥର ଉଡ଼ାଜାହାଜ ଦୁର୍ଘଟଣାବେଳେ ତାଙ୍କ ଉଡାଜାହାଜଟି ଆଫ୍ରିକାର ଜଙ୍ଗଲ ଅଞ୍ଚଳରେ ଖସିପଡ଼ିଥିଲା । ଦେହରେ ବିଶେଷ ଆଘାତ ଲାଗି ନ ଥିଲା, କିନ୍ତୁ ଯେଉଁଠାରେ ଉଡ଼ାଜାହାଜ ଖସି ପଡ଼ିଲା,ସେ ସ୍ଥାନ ହିଂସ୍ରଜନ୍ତୁ ପୂର୍ଣ୍ଣ । ବଣୁଆ ହାତୀ,ବାଘ, ସିଂହଙ୍କର ବାସସ୍ଥାନ । ଉଡ଼ାଜାହାଜରେ ଥିବା ଆରୋହୀମାନେ ବଣୁଆ ହାତୀମାନଙ୍କ ସମ୍ମୁଖରେ ପଡ଼ିଲେ, କିନ୍ତୁ କୌଶଳକ୍ରମେ ସେମାନେ ତାଙ୍କ କବଳରୁ ରକ୍ଷା ପାଇଲେ ।

ତୃତୀୟ ଥରର ଦୁର୍ଘଟଣା ସବୁଠାରୁ ମାରାତ୍ମକ । ଉଡାଜାହାଜଟି ଯେତେବେଳେ ଆକାଶରେ ଉଡୁଥିଲା ଆରୋହୀମାନେ ବେଶ ଆନନ୍ଦରେ ଆଫ୍ରିକାର ବଣ ଜଙ୍ଗଲର ଦୃଶ୍ୟ ଉପଭୋଗ କରୁଥିଲେ ତା ଭିତରେ କଳ କ'ଣ ବିଗିଡ଼ିଗଲା କେଜାଣି, ସଙ୍ଗେ ସଙ୍ଗେ ଉଡାଜାହାଜରୁ ନିଆଁ ବାହାରି ପଡ଼ିଲା । ଉଡାଜାହାଜ ଚାଳକ ଜଣେ ବିଚକ୍ଷଣ ଚାଳକ ଥିଲେ । ସେ ମୁହୂର୍ତ୍ତକ ମଧ୍ୟରେ ଜାହାଜଟିକୁ ତଳକୁ ଖସେଇ ଆଣିଲେ, କିନ୍ତୁ ଆକାଶପଥରେ ନିଆଁକୁ ବନ୍ଦ କରିବା ସହଜ ହେଲା ନାହିଁ । ଉଡାଜାହାଜ ତଳକୁ ଖସିବା ସଙ୍ଗେ ସଙ୍ଗେ ଆରୋହୀମାନେ ଅର୍ଦ୍ଧଦଗ୍ଧ ଅବସ୍ଥାରେ ବାହାରି ପଡ଼ିଲେ, କିନ୍ତୁ ସବୁଠୁ ବେଶୀ ଆଘାତ ପାଇଲେ ହେମିଂୱେ । ତାଙ୍କ ଖପୁରୀ ଫାଟିଗଲା । ଶରୀରର ଅନେକ ସ୍ଥାନରେ ଆଘାତ ହୋଇଗଲା । ମେରୁହାଡ଼ ଭାଙ୍ଗିଗଲା । ଆଫ୍ରିକାର ନାଇରୋବୀ ପ୍ରଦେଶର ନାଇରୋବୀ ସହରରେ ଥିବା ଡାକ୍ତରଖାନାକୁ ତାଙ୍କୁ ସଙ୍ଗେ ସଙ୍ଗେ ନିଆଗଲା । ସେଠାରେ କେତେଦିନ ଚିକିତ୍ସା ହେବାପରେ ଡାକ୍ତରମାନେ ଯେତେବେଳେ ମତ-ଦେଲେ ଯେ, ସେ ସଂକଟପୂର୍ଣ୍ଣ ଅବସ୍ଥା ପାର ହୋଇଛନ୍ତି, ସେତେବେଳେ ସମଗ୍ର ଆମେରିକାରେ ଆନନ୍ଦର ଢେଉ ଖେଳିଗଲା । ଆମେରିକାର ବଡ଼ ବଡ ପତ୍ରିକାମାନଙ୍କରେ ଏ ଖବର ବିଶେଷ ଭାବରେ ପ୍ରକାଶ ପାଇଲା ।

( ୧୧ )

ଆମେରିକା ମହାଦେଶର ଯୁକ୍ତରାଷ୍ଟ୍ରରେ 'କ୍ୟୁବା' ଏକ ସହର । କ୍ୟୁବା ସହର ହେମିଂୱେଙ୍କର ବଡ ପ୍ରିୟସ୍ଥାନ । ସେଠାକୁ ସେ ଯେତେଥର ଯାନ୍ତି,କିଛିଦିନ ରହିଆସନ୍ତି । ସ୍ପେନ୍ ସରକାରଙ୍କର ସେ ସହରରେ ଗୋଟିଏ କୋଠିଅଛି, ହେମିଂୱେ ସେହି କୋଠିରେ ଅନେକ ସମୟ ରହନ୍ତି । ଏବେ ବି ସେଇ କୋଠିରେ ସେ ବେଳେବେଳେ ରହନ୍ତି । ପ୍ରାସାଦଟି ବଡ଼ ସୁନ୍ଦର । ପନ୍ଦର ଏକର ଜମି ଉପରେ ଏଇ କୋଠିଟି ତିଆରି । ବଡଲୋକ ଭଳିରେ ଚଳିବାକୁ ଯେତେ ଜିନିଷ ଦରକାର, ସେସବୁ ତା ଭିତରେ କିଛି ଅଭାବନାହିଁ । ତା'ରି ଭିତରେ ଗୋଟିଏ ଟେନିସ ପଡ଼ିଆ ଅଛି । ଟେନିସ ଖେଳ ଆମେରିକା ଓ ଇଂରେଜ ଲୋକମାନଙ୍କର ଗୋଟିଏ ପ୍ରିୟ ଖେଳ । ହେମିଂୱେ ସମୟେ ସମୟେ ମଧ୍ୟ ଖେଳ ପଡ଼ିଆକୁ ଯାନ୍ତି ।

ସେଇ କୋଠିକୁ ଲାଗି ଗୋଟିଏ ସୁନ୍ଦର ବଗିଚା । ନାନା ରକମର ଫୁଲ ଫଳରେ ବଗିଚାଟି ସବୁବେଳେ ପୂର୍ଣ୍ଣଥାଏ । କବି, ଲେଖକ, ସାହିତ୍ୟିକମାନଙ୍କୁ ପ୍ରକୃତି ବଡ ଆନନ୍ଦ ଦିଏ । ହେମିଂୱେ ଏ ବଗିଚାଟିକୁ ଭାରି ଭଲ ପା'ନ୍ତି । ତା'ରି ଭିତରେ ଗୋଟିଏ ପୋଖରୀ, ପୋଖରୀଟି ବିଶେଷ ଗଭୀର ନୁହେଁ, ମାତ୍ର ପହଁରିବା ପାଇଁ ଖୁବ୍ ସୁବିଧାଜନକ ।

ସେହି ପ୍ରାସାଦ ଭିତରେ ସାହିତ୍ୟିକମାନଙ୍କର ଅତି ପ୍ରିୟ-ଜିନିଷ—ଗୋଟିଏ ପାଠାଗାର ରହିଛି । ପୃଥିବୀର ବଛା ବଡ ଲେଖକମାନଙ୍କର ଲେଖାଗୁଡ଼ିକ ତା'ଭିତରେ ସଜ୍ଜିତ ହୋଇ ରହିଛି । ତାହା ସାଧାରଣ ପାଠଗାର ନୁହେଁ, ହେଲେ ସୁଦ୍ଧା ସାଧାରଣ ପାଠାଗାରରେ ଯେଉଁସବୁ ବହି ନ ମିଳିବ, ହେମିଂୱେଙ୍କର ଅଧିକାଂଶ ସମୟ ତା'ରି ଭିତରେ ଅତିବାହିତ ହୁଏ । ପାଠଗାର ଭିତରେ ବସି ପୁସ୍ତକ ଆଲୋଚନା କରୁଥିବାବେଳେ ତାଙ୍କୁ ସଂସାରର ଅନ୍ୟ ସୁଖ ଦୁଃଖ ପରି ଜଣାପଡ଼େ ନାହିଁ ।

ହେମିଂୱେ ଇତର ଜୀବଜନ୍ତୁଙ୍କୁ ଦେଖିଲେ ଭାରି ଆନନ୍ଦିତ ହୁଅନ୍ତି । ସେ କ୍ୟୁବା ସହରରେ ସ୍ଥାୟୀଭାବରେ ରହିବା ଦିନଠାରୁ କେତେଗୁଡ଼ିଏ ଜୀବଜନ୍ତୁ ପାଳିଛନ୍ତି । ତାଙ୍କ ଘରେ ସାତଟି କୁକୁର ଅଛନ୍ତି ଓ ଅଠରଟି ବିରାଡ଼ି ଅଛନ୍ତି । ସେ କୁକୁରମାନଙ୍କୁ ନେଇ ବୁଲି ଯାନ୍ତି । ବିରାଡ଼ିମାନଙ୍କ ସହିତ ବେଳେ ବେଳେ ଖେଳନ୍ତି । ସେ ନିଜ ହାତରେ ଅନେକ ସମୟରେ ସେମାନଙ୍କୁ ଖାଇବାକୁ ଦିଅନ୍ତି । ବିରାଡ଼ି କୁକୁରଙ୍କ ସହିତ ଖେଳିବାକୁ ସେ ଅବସରବିନୋଦନ ବୋଲି ମନେକରନ୍ତି ।

ତାଙ୍କର ନିଜର ଖାଇବା, ପିଇବା, ଶୋଇବା ବିଷୟରେ ସେ ବେଶୀ ନଜର ଦେଉ ନ ଥାନ୍ତି । ସେଥିପାଇଁ ତାଙ୍କର ଶେଷ ସ୍ତ୍ରୀ ଏ ବିଷୟରେ ତାଙ୍କୁ ଅନେକ ସମୟରେ ସତର୍କ କରି ଦେଇଥାନ୍ତି । ନିୟମିତ ସମୟରେ ଖାଇବା, ଶୋଇବା ପ୍ରତି

( ୧୬ )

ତ ଙ୍କ ସ୍ତ୍ରୀ ଖୁବ୍ ଦୃଷ୍ଟି ଦିଅନ୍ତି । ସ୍ୱାସ୍ଥ୍ୟ ଦୃଷ୍ଟିରୁ ଡାକ୍ତର ତାଙ୍କୁ ମାଛ ଖାଇବାକୁ ମନା କରିଦେଇଛନ୍ତି । ରାତି ସାଢ଼େ ଦଶଟା ବେଳେ ସେ ଯେପରି ଶୋଇବେ ଓ ନିୟମିତ ସମୟରେ ଉଠିବେ, ସେଥିପ୍ରତି ତାଙ୍କର ସ୍ତ୍ରୀ ବିଶେଷ ନଜର ଦେଇଥାନ୍ତି । ସ୍ତ୍ରୀଙ୍କ ତତ୍ତ୍ୱା-ବଧାନରେ ରହିବା ଫଳରେ ସେ ବର୍ତ୍ତମାନ ସୁସ୍ଥ ଅଛନ୍ତି ଓ ଲେଖାଲେଖିରେ ମନଦେଇ ପାରିଛନ୍ତି ।

( ୧୭ )

ଆମେରିକାର ଜଣେ ସାହିତ୍ୟିକ, ତାଙ୍କ ନାଁ – ସିନ୍‌କ୍ଲେୟାର ଲୁଇସ । ପୃଥିବୀର ସାହିତ୍ୟିକମାନଙ୍କ ମଧ୍ୟରେ ସେ ଜଣେ ପ୍ରସିଦ୍ଧ ଲୋକ । ଆମେରିକାରେ ସେ ବେଶୀ ଖ୍ୟାତି ଲାଭ କରିଥିଲେ । କାରଣ ସାହିତ୍ୟରେ ସମଗ୍ର ଆମେରିକା ମହାଦେଶରୁ ସେ ପ୍ରଥମେ ନୋବେଲ ପ୍ରାଇଜ ପାଇଥିଲେ, ସେତେବେଳେ ହେମିଂୱେ ସାହିତ୍ୟ ଜଗତରେ ପ୍ରଥମେ ନାଁ କରି ଆସୁଛନ୍ତି ।

ସୁଇଡେନ୍‌ର 'ସୁଇଡ଼ଶ ଏକାଡେମୀ' ପ୍ରଧାନ ସାହିତ୍ୟିକ ବୈଜ୍ଞାନିକ କିମ୍ବା ଶାନ୍ତି ସ୍ଥାପକ ବାଛନ୍ତି । ତା'ପରେ ଗୋଟିଏ ନିର୍ଦ୍ଦିଷ୍ଟଦିନ ଠିକ୍ ହୁଏ । ସେହିଦିନ ନୋବେଲ ପ୍ରାଇଜ ବିଜେତାମାନେ ଆସି 'ସୁଇଡ଼ଶ ଏକାଡେମୀ'ରେ ଏକ ବକ୍ତୃତା ଦିଅନ୍ତି । ସିନକ୍ଲେୟାର ଲୁଇସ ନୋବେଲ ପ୍ରାଇଜ ପାଇବାକୁ ଆସିଲାବେଳେ ସେହିପରି ଏକ ବକ୍ତୃତା ଦେଇଥିଲେ । ସେ ବକ୍ତୃତା ପ୍ରସଙ୍ଗରେ ସେତେବେଳେ ହେମିଂୱେଙ୍କ କଥା କହିଥିଲେ । ସେତେବେଳକୁ ହେମିଂୱେଙ୍କର ଦୁଇଟି ବହି ପ୍ରକାଶିତ ହୋଇଥାଏ । ସେ ଦୁଇଟି ପ୍ରକାଶିଏ ବହି ପଢ଼ି ସିନକ୍ଲେୟାର ଲୁଇସ ଏତେ ଆନନ୍ଦିତ ହୋଇଥିଲେ ଯେ. ସେ ତାଙ୍କ ବକ୍ତୃତାରେ ହେମିଂୱେଙ୍କ ସାହିତ୍ୟ ସାଧନାର ବିଶେଷ ପ୍ରଶଂସା କରିଥିଲେ । ହେମିଂୱେ ସାହିତ୍ୟ କ୍ଷେତ୍ରରେ ସେ ସମୟରେ ଅତି ନୂଆ, କିନ୍ତୁ ତାଙ୍କର ସାହିତ୍ୟ ସାଧନା ସେତିକିବେଳେ ଜଣାପଡିଥିଲା ।

ଇଂରେଜୀରେ ତାଙ୍କର ଗୋଟିଏ ପ୍ରଧାନବହି – ବୃଦ୍ଧ ଏବଂ ସମୁଦ୍ର (the old man and the sea) ସେ ବହିଟା ଲେଖିବା ପରେ ସେ ଆମେରିକାର ବାହାରେ ମଧ୍ୟ ବେଶ ପରିଚିତ ହୋଇଥିଲେ । ବହିଟି ବାହାରିବା ପରେ ୧୯୫୩ ମସିହାରେ ସେ ସମ୍ମାନ ସୂଚକ ପ୍ରାଇଜ ପାଇଥିଲେ । ଆମେରିକାର ପଲିଟିଜର ପ୍ରାଇଜଟି ସେ ଏହି ବହିର ଲେଖକ ହିସାବରେ ପାଇଥିଲେ । ୟୁରୋପର ସମାଲୋଚକ ଓ ଲେଖକମାନେ ତାଙ୍କ ବହିଗୁଡ଼ିକ ସେତେବେଳେ ଆଲୋଚନା କରୁଥିଲେ ।

୧୯୫୪ ମସିହାରେ ସାହିତ୍ୟରେ ନୋବେଲ ପ୍ରାଇଜ ପାଇଁ ଦୁଇଜଣ ପ୍ରତିଦ୍ୱନ୍ଦୀ ଥିଲେ । ଜଣେ ଅର୍ଣ୍ଣେଷ୍ଟ ହେମିଂୱେ ଏବଂ ଆଉଜଣେ ଆଇସଲ୍ୟାଣ୍ଡର ଲେଖକ । ହଲଡର

ବିଲିୟନ ଲେକ୍‌ସନକମ । ଜିନ୍ତିଦିନ ପର୍ଯ୍ୟନ୍ତ ସୁଇଡଶ ଏକାଡେମୀରେ ଏ ଦୁଇଜଣଙ୍କ ବିଷୟରେ ଅଲୋଚନା ଚାଲିଲା । ଏକାଡେମୀର ୧୮ ଜଣ ସଭ୍ୟଙ୍କ ମଧ୍ୟରୁ କେତେକ ହେମିଂୱେଙ୍କୁ ଓ କେତେକ ବିଲିୟନଙ୍କ ସପକ୍ଷରେ ମତଦେଲେ, କିନ୍ତୁ 'ବୃଦ୍ଧ ଓ ସମୁଦ୍ର' ବହିଟି ଆଲୋଚିତ ହେବାବେଳେ ସମସ୍ତେ ଏ ବହିଟିର ମୌଳିକତାକୁ ପ୍ରଶଂସା କରୁ-ଥିଲେ । ଶେଷରେ ସମୟ ଆସିଲା, ଯେତେବେଳେ ଏ ବହିଟିର ଲେଖକଙ୍କୁ ନୋବେଲ ପ୍ରାଇଜ ଦେବାପାଇଁ ସ୍ଥିରହେଲା । ପଲଟିଜର ପ୍ରାଇଜ ବିଜେତା ପୁଣି ନୋବେଲ ପ୍ରାଇଜ ପାଇବାପାଇଁ ମନୋନୀତ ହେଲେ । ଯଥା ସମୟରେ ଏକାଡେମୀର ନିଷ୍ପତ୍ତି ହେମିଂୱେଙ୍କୁ ଜଣାଇ ଦିଆଗଲା । ଆମେରିକାର ଅଧିକାଂ ପତ୍ରିକା ହେମିଂୱେଙ୍କୁ ବାଛିଥିବା କମିଟିକୁ ଧନ୍ୟବାଦ ଦେଲେ ।

ଏହି ସମୟକୁ ହେମିଂୱେଙ୍କ ଅର୍ଥନୈତିକ ଅବସ୍ଥା ବଡ଼ ଶୋଚନୀୟ । ସେତେବେଳକୁ ସେ ଅନେକ ଟଙ୍କା କରଜ କରି ସାଇଥିଲେ । ତାଙ୍କର ପ୍ରାୟ ୩୮୫୨୦ ଟଙ୍କା ସେତେବେଳକୁ କରଜ ଥିଲା । ସେ ଏ ପଇସା ତାଙ୍କ ଜୀବନ କାଳରେ ସୁଝି ପାରିବେ ବୋଲି ଆଶାକରି ନଥିଲେ, ହଠାତ ସୌଭାଗ୍ୟଦ୍ୱାର ତାଙ୍କ ପାଇଁ ଖୋଲିଗଲା ।

ସୁଇଡେନର ରାଜଧାନୀ ଷ୍ଟକ୍‌ହୋମରୁ ତାଙ୍କ ପାଖରେ ଖବର ପହଞ୍ଚିଲା, ୧୯୫୪ ମସିହାର ନୋବେଲ ପ୍ରାଇଜ ସାହିତ୍ୟିକ ଶୈଳୀରେ ପାରଦର୍ଶିତା ହେତୁ ହେମିଂୱେଙ୍କୁ ମିଳିଲା ସେ ନିଜେ ଯାଇଁ ଷ୍ଟକହୋମରୁ ତାହା ଆଣିବା କଥା, କିନ୍ତୁ ସେ ନିର୍ଦ୍ଦିଷ୍ଟ ଦିନ ସେଠାକୁ ଯାଇ ପାରିଲେ ନାହିଁ । ପୁରସ୍କାରର ଅର୍ଥ ଓ ସନନ୍ଦ ତାଙ୍କ ପାଖରେ ଯଥାସମୟରେ ତ କରେ ଆସି ପହଞ୍ଚିଲା ।

ହେମିଂୱେଙ୍କ ବହିଗୁଡ଼ିକ ଭିତରେ କେତେଗୁଡ଼ିଏ ବହି ବର୍ତ୍ତମାନ ସାରା ପୃଥିବୀରେ ଆଦର ପାଉଅଛି । ତାଙ୍କ ବହିର ବିଷୟବସ୍ତୁ ଖାଲି ଆମେରିକା ମଧ୍ୟରେ ଆବଦ୍ଧ ନୁହେଁ । ସେ ବର୍ତ୍ତମାନ ଖାଲି ଆମେରିକାରେ ନୁହନ୍ତି; ସମଗ୍ର ପୃଥିବୀର, ସାହିତ୍ୟିକ ଓ କବିମାନେ ମାନବ ସମାଜକୁ ଯେଉଁ ଅର୍ଥ ମୂଲ୍ୟଦାନ ଦେଇ ଯାଆନ୍ତି ତାହା ଖାଲି କୌଣସି ଦେଶ ଭିତରେ ବା କୌଣସି ଯୁଗପାଇଁ ସୀମାବଦ୍ଧହୋଇ ରହେ ନାହିଁ । କାହିଁ କେଉଁ ଯୁଗରେ ସେକ୍‌ସ ପିୟର ଇଂଲଣ୍ଡରେ ଓ କାଳିଦାସ ଭାରତରେ କେଉଁ ପଲ୍ଲୀରେ ଜନ୍ମ ହୋଇଥିଲେ ; କିନ୍ତୁ କାଳିଦାସଙ୍କ ଲେଖା ଯେପରି ପୃଥିବୀର ସବୁଦେଶର ସାହିତ୍ୟ ଭିତରେ ଆଦର ପାଉଛି, ସେକ୍‌ସପିୟରଙ୍କର ନାଟକ ଗୁଡ଼ିକ ମଧ୍ୟ ସବୁ-ଦେଶର ଲୋକଙ୍କ ଭିତରେ ଆଦର ପାଉଛି । ହେମିଂୱେ ଆମେରିକା ମହାଦେଶରେ

ଜାତ ହୋଇଥିଲେ । ତାଙ୍କର ସାହିତ୍ୟ ଏବେ ସବୁଦେଶରେ ଆଦର ପାଉଛି ପୁଣି ଯୁଗଯୁଗଧରି ଆଦର ପାଉଥିବ ।

ବିଶ୍ୱକବି ରବୀନ୍ଦ୍ରନାଥଙ୍କର ଗୀତାଂଜଳି ପରି ହେମିଂୱେଙ୍କର ଗୋଟିଏ ବହି ପୃଥିବୀପ୍ରସିଦ୍ଧ ହୋଇଛି । ସେ ବହିଟି ଇଂରାଜୀରେ ଲେଖା ଓ ତାହାର ନାମ (The old man and the sea) । ହେମିଂୱେ ମନେକରନ୍ତି ତାଙ୍କର ବହିଗୁଡ଼ିକ ମଧ୍ୟରେ ସେ ବହିଟି ଉତ୍କୃଷ୍ଟ । ସେ ନିଜେ ବହିଟିକୁ ଦୁଇଶହ ଥର ପଢ଼ିଛନ୍ତି । ପୃଥିବୀରେ କେହି ଲେଖକ ନିଜ ବହିକୁ ଏପରି ଏତେଥର ପଢ଼ିଥିବ କି ନାହିଁ ସଂଦେହ । ସେ ବହିଟିର ଆକାର ଅତି ବଡ ନୁହେଁ ବା ଲେଖାର ଶୈଳୀ ଜଟିଳ ନୁହେଁ ।

ଏବେ ଆମେରିକାର ଏକ ସିନେମା କଂପାନୀ ବହିଟିକୁ ଚଳଚ୍ଚିତ୍ରରେ ପରିଣତ କରିବେ ବୋଲି ଠିକ୍ କରିଛନ୍ତି ।

ହେମିଂୱେ ଏବେ ମଧ୍ୟ ସାହିତ୍ୟସାଧନାରେ ଲାଗିଛନ୍ତି । ସମୟ ସମୟେ ସାହିତ୍ୟ ଭଣ୍ଡାର ତାଙ୍କର ଖଣ୍ଡିଏ ଖଣ୍ଡିଏ ପୁସ୍ତକ ଦ୍ୱାରା ସମୃଦ୍ଧିଲାଭ କରୁଛି ।

———

# ବିଶ୍ୱବିଚିତ୍ରା

## ଯନ୍ତ୍ର ମଣିଷ

ଏପଲର୍ଡ ଫ୍ରାନ୍ସର ଏକ ସ୍ୱୟଂସଞ୍ଚାଳ୍ୟ ଯନ୍ତ୍ର-ମଣିଷ । ଏହା ପାଣି ଭିତରେ ରହି ସାଗର ଶଯ୍ୟାଗୁଡ଼ିକ ଫଟୋ ଉତ୍ତୋଳନ କରେ । ପ୍ରାୟ ୬000 ମିଟର ଗଭୀର ପାଣିଭିତରେ ରହି ଏହା ପ୍ରତି ୧୦ ସେକେଣ୍ଡରେ ଗୋଟିଏ କରି ଫଟୋ ଉଠାଏ । ଏହାର ଲମ୍ବ ୬ ମିଟର ଓ ଉଚ୍ଚତା ୨ ମିଟର । ଏହା ସ୍ୱାଧୀନଭାବେ ଦୀର୍ଘ ଛଅ ଘଣ୍ଟା ପର୍ଯ୍ୟନ୍ତ ପାଣି ଭିତରେ ରହି କାର୍ଯ୍ୟ କରିପାରେ । ଏହା ସାଧାରଣତ ସାଗର ଶଯ୍ୟାରେ ବିଭିନ୍ନ ଟୁଙ୍କୁ ବିଶେଷକରି ପାଲିମେଟାଲିକ୍ ନୋଡୁଲ୍ ଭଳି ବିଭବର ସନ୍ଧାନ ପାଇଁ ବ୍ୟବହୃତ ହୁଏ ।

## କେନିଆରେ ପୃଥିବୀର ସର୍ବୋଚ୍ଚ ଜନ୍ମହାର

କେନିଆ (ପୂର୍ବଆଫ୍ରିକା)ର ବର୍ଷକୁ ଜନସଂଖ୍ୟା ବୃଦ୍ଧିର ହାର ଶତକଡ଼ା ୪.୧ ପୃଥିବୀର ଅନ୍ୟ ଯେ କୌଣସି ରାଷ୍ଟ୍ରର ଜନସଂଖ୍ୟା ବୃଦ୍ଧିର ହାରଠାରୁ ଅଧିକ । ୨0 ବର୍ଷ ପୂର୍ବେ କେନିଆ ସ୍ୱାଧୀନତା ଲାଭ କରିବା ସମୟରେ ଏଠା ଲୋକମାନଙ୍କର ହାରାହାରି ଜୀବନସୀମା ଥିଲା ୪୨ ବର୍ଷ ଓ କେନିଆର ସ୍ତ୍ରୀମାନେ ପ୍ରତ୍ୟେକ ହାରାହାରି ୬ଟି ସନ୍ତାନ ରଖୁଁଥିଲେ । ବର୍ତ୍ତମାନ କିନ୍ତୁ ସାଧାରଣ ସ୍ୱାସ୍ଥ୍ୟର ଉନ୍ନତି ହେତୁ ହାରାହାରି ଜୀବନ ସୀମା ୫୫ ବର୍ଷ ଓ କେନିଆର ସ୍ତ୍ରୀମାନେ ଆଠଟି ସନ୍ତାନ ପାଇଁ ଆଶା କରୁଛନ୍ତି ।

## ରେଲ୍‌ବସ୍ ଏକ ନୂତନ ଉଦ୍ଭାବନ

ବ୍ରିଟେନ୍‌ର ରେଲ୍ ଇଞ୍ଜିନିୟରିଂ ସଂସ୍ଥା ଓ ଲେଲାଣ୍ଡ ବସ୍ ସଂସ୍ଥା ମିଳିତ ଭାବେ ଏକ ନୂଆ ଗାଡ଼ିର ଉଦ୍ଭାବନ କରିଛନ୍ତି । ଏହି ଗାଡ଼ିର ଚେସିସ୍‌ଟି ଷ୍ଟିଲ୍‌ରେ ନିର୍ମିତ ଓ ପ୍ରତି ଡବାରେ ୯୪ଜଣ ଯାତ୍ରୀଙ୍କର ଯିବାର ସମସ୍ତ ସୁବିଧା କରାଯାଇଛି । ଏହାର ବେଗ ଘଣ୍ଟା ପ୍ରତି ୭୫ ମାଇଲ୍ । ପୃଥିବୀର ସର୍ବାଧୁନିକ ରେଳ ଓ ବସ୍‌ର ଯନ୍ତ୍ରପାତି ଓ ସୁବିଧାର ମିଶ୍ରଣରେ ଏହି ନୂଆ 'ରେଳ ବସ୍'ର ଉଦ୍ଭାବନ ହୋଇଛି ।

## ସର୍ବୋଚ୍ଚ ସରକାରୀ ନିୟନ୍ତ୍ରଣ ଓ ସର୍ବନିମ୍ନ ଶାସନ

ଯେତେବେଳେ ସାଧାରଣତନ୍ତ୍ର ଜନ୍ମ ନେଲା, ସେତେବେଳେ ନେତାମାନେ ହିଁ କେବଳ ଅନୁଷ୍ଠାନ ଗଢ଼ିଥିଲେ । ପରେ ଏହି ଅନୁଷ୍ଠାନଗୁଡ଼ିକ ପ୍ରତି ଅଧିକ ନେତାଙ୍କ

ଜନ୍ମଦେଲେ. କିନ୍ତୁ ବାସ୍ତବରେ ଆମେ ଦେଶ ଗଠନ କରିବା ଭଳି ଅନୁଷ୍ଠାନ ସୃଷ୍ଟି କରିବାରେ ହାରିଯାଇଛୁ ଯାହାକି ପରବର୍ତ୍ତୀ କାଳରେ ଦକ୍ଷ ନେତାଙ୍କୁ ସୃଷ୍ଟି କରି ପାରିଥା'ନ୍ତା । ଆମର ସରକାରୀ ନିୟନ୍ତ୍ରଣ ସର୍ବାଧିକ ମାତ୍ର ଶାସନ ସର୍ବନିମ୍ନ । ସାଧାରଣ ସରକାରୀ କର୍ମଚାରୀ ସଂଖ୍ୟା ଅଧିକ କିନ୍ତୁ ଜନସେବା କମ୍ । ଆଇନ୍ ପ୍ରଣୟନ ଅଧିକ ମାତ୍ର ନ୍ୟାୟ ବଣ୍ଟନ କମ୍ ।

—ଥମାସ୍ ଡାଫବ୍ସନ୍

## ପୃଥିବୀର ବୃହତ୍ତମ ଗର୍ତ୍ତ

ପୃଥିବୀର ବୃହତ୍ତମ ଗର୍ତ୍ତ ଜର୍ମାନ ସାଧାରଣତନ୍ତ୍ରରେ ଆଚେନ୍ ଓ କୋଲୋନ୍ ମଧ୍ୟରେ ଖୋଳା ଯାଉଛି । ସେଠାକାର ଗୋଟିଏ ଲିଗ୍ ନାଇଟ୍ ଖଣିର ଏହା ଏକ ଅଂଶ ୨୦୯୦ ମସିହା ସୁଦ୍ଧା ପ୍ରାୟ ୧୦୦୦୦ ହେକ୍ଟର ଭଲ ଜମିକୁ ୫୦୦ ମିଟର ଗଭୀରରେ ଖୋଳା କରଯାଇ ପାରିବ । ଏଥିରୁ ୨୫୦୦ ନିୟୁତ ଟନ୍ ଜୋଇଲା ପାଇବା ପାଇଁ ପ୍ରାୟ ୧୫୦୦୦ ନିୟୁତ ମାଟି ଖୋଳି ବାହାର କରି ଦିଆଯାଇ ଛି ।

## ପୃଥିବୀର ସର୍ବୋଚ୍ଚ ହ୍ୟାଙ୍ଗ୍ ଗ୍ଲାଇଡର ଯାତ୍ରା

ଭାରତୀୟ ସେନାବାହିନୀର ମାଇକ୍ରୋ ଲାଇଟ୍ ହ୍ୟାଙ୍ଗ୍ ଗ୍ଲାଇଡର 'ଡବଲ ଇଗଲ୍' ଏପ୍ରିଲ ୭ ତାରିଖରେ କାଶ୍ମୀରର ଶ୍ରୀ ନଗର ଠାରୁ ଯାତ୍ରା ଆରମ୍ଭ କରି ଭାରତର ଦକ୍ଷିଣର ସୀମା କନ୍ୟାକୁମାରୀ ଠାରେ ମେ' ମାସ ୧୮ ତାରିଖ ସକାଳ ୭.୫୪ ମିନିଟ୍‌ରେ ଅବତରଣ କରିଥିଲା । ଏହା ପୃଥିବୀରେ ଏକ ଚହଳ ସୃଷ୍ଟି କରିଛି । ପକ୍ଷୀଭଳି ଉଡୁଥିବା ଏହି 'ଡବଲ ଇଗଲ' ଗ୍ଲାଇଡର୍‌କୁ କ୍ୟାପ୍‌ଟେନ୍ ହରିସ୍ ଜିତ୍ ସିଂ ୧୪, ୮୦୦ ଫୁଟ ଉପରେ ଥାଇ ୫୦୦୦ କି.ମି. ଅତିକ୍ରମ କରି ଆସିଥିଲେ । ଏହାପୂର୍ବରୁ ପୃଥିବୀରେ କେବଳ ଏହି ଗ୍ଲାଇଡର ଯାତ୍ରାରେ ସର୍ବୋଚ୍ଚ ୩୪୦୦ କି ମି. ଯାତ୍ରା କରିବାର ରେକର୍ଡ ଥିଲା ।

## ତେନ୍ତୁଳିର ଉପକାରିତା

ଇଣ୍ଡିଆନ୍ କାଉନ୍‌ସିଲ ଅଫ୍ ମେଡ଼କାଲ ରିସର୍ଚ୍ଚର ନିର୍ଦ୍ଦେଶକ ଡକ୍ଟର ଏସ. ଶ୍ରୀରାମଚାରୀ କହିଛନ୍ତି ଯେ ଫ୍ଲୁଓରୋସିସ୍ ଭଳି ଏକ ଅସ୍ଥି ରୋଗକୁ ତେନ୍ତୁଳିର ବ୍ୟବହାର ଦ୍ୱାରା ଆରୋଗ୍ୟ କରଯାଇ ପାରିବ । ତେନ୍ତୁଳିକୁ ପାଣିରେ ମିଶାଇ ବ୍ୟବହାର କରିବା ଦ୍ୱାରା ଫ୍ଲୁଓରୋସିସ୍ ରୋଗ ବୃଦ୍ଧି କରୁଥିବା ଫ୍ଲୁଓରାଇଡ୍‌କୁ ଏହା ନଷ୍ଟ କରିଦିଏ ଓ ରୋଗ ଆରୋଗ୍ୟ ହେବାରେ ସାହାଯ୍ୟ କରେ ।

## ହାବଡା ପୋଲ ପ୍ରତ୍ୟେକ ସଂଧ୍ୟାରେ ସଂକୁଚିତ ହୁଏ ।

କଲିକତାର ହୁଗୁଳି ନଦୀ ଉପରେ ଥିବା ହାବଡା ପୋଲ ୧୯୪୩ ମସିହାରେ

ନିର୍ମିତ ହୋଇଥିଲା । ବିଶିଷ୍ଟ ଇଞ୍ଜିନିୟର ହରବର୍ଟ ସି୍ଲେ ସିଥ୍ ଏହି ପୋଲକୁ ନିର୍ମାଣ କରିଥିଲେ । ଏହାର ଲମ୍ବ ୧୫୦୦ ଫୁଟ୍ । ଏକ ଅନୁସନ୍ଧାନରୁ ଜଣାଯାଇଛି ଯେ, ନଗରୀର ମଧ୍ୟାହ୍ନର ଆତ୍ୟଧିକ ଉତ୍ତାପ ହେତୁ ହାବଡ଼ା ପୋଲର ୪ ଫୁଟ୍ ସଂପ୍ରସାରଣ ହୁଏ ଓ ପ୍ରତ୍ୟେକ ସଂଧ୍ୟାରେ ଏହା ପୁଣି ସଂକୁଚିତ ହୋଇ ଛୋଟ ହୋଇଯାଏ ।

## ଭାରତୀୟ ପ୍ରଥମ ମହିଳାଙ୍କ ଏଭରେଷ୍ଟ ଶୃଙ୍ଗ ବିଜୟ

ଉତ୍ତରପ୍ରଦେଶର ନାକୁରୀ ଗ୍ରାମର ୨୮ବର୍ଷ ବୟସ୍କା ବାଚେନ୍ଦ୍ରୀ ପାଲ ଭାରତର ପ୍ରଥମ ମହିଳା ଯେ କି ପୃଥିବୀର ଉଚ୍ଚତମ ଶୃଙ୍ଗ ଏଭରେଷ୍ଟ (୮୮୪୮ ମିଟର)ର ଶୀର୍ଷ ସ୍ଥାନରେ ୧୯୮୪ ମେ' ମାସ ୨୨ ତାରିଖ ଅପରାହ୍ଣ ୧.୦୭ ମିନିଟ୍‌ରେ ପଦାର୍ପଣ କରିଥିଲେ । ସେ ଜଣେ ଉତ୍ତର କାଶୀରେ ଅର୍ଥନୀତି ବିଭାଗର ଅଧ୍ୟାପିକା । ସେ ଏଭରେଷ୍ଟ ଶୃଙ୍ଗ ଆରୋହଣ କରିବାରେ ପ୍ରଥମ ମହିଳା ଆରୋହଣକାରୀ । ସେ ମଧ୍ୟ ଅନ୍ୟ ପାଞ୍ଚଜଣ ମହିଳା ଆରୋହଣକାରୀମାନଙ୍କ ମଧ୍ୟରେ ସର୍ବ କନିଷ୍ଠ ।

## ଭଗବାନଙ୍କର ନାମ ଉଚ୍ଚାରଣର ଚମତ୍କାରିତା

ଲୋକମାନଙ୍କୁ ରୋଗ ହେଲେ ସେମାନେ ଔଷଧ ଖାଇ ଭଲ ହୋଇଯାଉଛନ୍ତି, ଠିକ୍ ସେହିପରି ଭଗବାନଙ୍କ ନାମ ଉଚ୍ଚାରଣରେ ମନୁଷ୍ୟର ମନରେ ପବିତ୍ରତା ଓ ସ୍ଥିରତା ଯୋଗୁ ଅନେକ ଉପକାର ମିଳିଥାଏ । ଭଗବାନଙ୍କ ନାମକୁ ଏକାଗ୍ରଭାବେ ସ୍ଥିର ଚିତ୍ତରେ ଯେ ଅନେକ ସମୟ ଜପକଲେ ଏହା ଫଳ ମିଳେ । ଏହି ଜପ ଭକ୍ତିପୂର୍ଣ୍ଣ ହୋଇ କେତେକ ଶାରୀରିକ ଓ ମାନସିକ ନିୟମାନୁଯାୟୀ ପାଳନ କରଗଲେ ଏହାକୁ ମନ୍ତ୍ରରୋପ କୁହାଯାଏ । ଏହା ନିୟମିତ ଭାବେ କରିବାଦ୍ୱାରା ମଣିଷ ଭଗବତ୍ ଦର୍ଶନ ଲାଭକରେ ଓ ସ୍ୱର୍ଗୀୟ ଆନନ୍ଦ ପାଏ. ଏପରିକି ଅନିୟମିତ ଭାବେ ଭଗବାନଙ୍କର ନାମ ଜପ କଲେ ମଧ୍ୟ ସାମୟିକ ସୁଫଳ ମିଳେ ଯାହାକି ଅଜାମିଳ ପାଖରେ ଘଟିଥିଲା । ଶ୍ରୀ କବି-ଶେଖରୀ ସୁବ୍ରମଣ୍ୟ ଶାସ୍ତ୍ରୀଗାଲ୍ ମତଦେଇ କହିଥିଲେ ଯେ ପାପରୁ ମୁକ୍ତି ପାଇବାପାଇଁ ଭଗବାନ୍‌ଙ୍କୁ ନିୟମିତ ଭାବେ ଏକାଗ୍ର ଚିତ୍ତରେ ଅହରହ ଜପ କରିବା ସହଜ ଜଣାପଡୁ ଥିଲେ ମଧ୍ୟ ଏହା ସେତିକି ସହଜ ନୁହେଁ । ଏ କାର୍ଯ୍ୟପାଇଁ କିଛିଟା ଏକାଗ୍ରତା, ସ୍ଥିରତା ଓ ନୀରବତା ଆବଶ୍ୟକ । ଅଜାମିଳ ନାମରେ ଜଣେ ଭଗବତ୍‌ପ୍ରେମୀ ଲୋକ ଥିଲା । ପରେ ପରବର୍ତ୍ତୀ କାଳରେ ସେ କଳୁଷିତ ହୋଇ ବିଭିନ୍ନ ପାପ କାର୍ଯ୍ୟ କଲା । ମୃତ୍ୟୁ ସମୟରେ ସେ ଥରେ ମାତ୍ର ନିଜର ପୁଅ ନାରାୟଣକୁ 'ନାରାୟଣ' ବୋଲି ଡାକିଦେଲା । ସେ ଡାକରେ ଭଗବାନଙ୍କ ପ୍ରତି ଆଗ୍ରହ ନ ଥିଲେ ମଧ୍ୟ, କେବଳ ନାରାୟଣ ନାମର ମହାତ୍ମ୍ୟ ଏତେ ଯେ ସ୍ୱୟଂ ଭଗବାନ ଏଥିରେ ଆନନ୍ଦିତ ହୋଇ ଆସି ମୃତ୍ୟୁ ଦେବତାଙ୍କୁ ସେଠାରୁ ଫେରାଇ ଦେଇଥିଲେ । ସେହି ସମୟରେ ଭଗବାନ ଓ ମୃତ୍ୟୁ ଦେବତାଙ୍କ

ମଧ୍ୟରେ ଧର୍ମ କ'ଣ ବୋଲି ଓ ଅଧର୍ମ କଣ ବୋଲି ବା ବାକ୍ୟାଳାପ ହୋଇଥିଲା । ମହା-ଭାରତରେ ମଧ୍ୟ ଯେତେବେଳେ ମହାନ ଯୁଧିଷ୍ଠିରଙ୍କର ମନରେ ବିରାଗ ଦେଖାଗଲା ସେତେବେଳେ ଭୀଷ୍ମ ତାଙ୍କୁ ଭଗବାନଙ୍କର ଗୁଣ ଗାନକରି ଏ ପ୍ରକାର କୁଚିନ୍ତା ଦୂର କରିବା ପାଇଁ ବୁଝାଇ ଥିଲେ ।

**ଯିଏ ଈଶ୍ୱରଙ୍କ ନିୟମ ପାଳନ କରେ ଈଶ୍ୱର ତାଙ୍କୁ ରକ୍ଷା କରନ୍ତି**

ଜନସାଧାରଣଙ୍କର ମଙ୍ଗଳ ପାଇଁ ଈଶ୍ୱର ବେଦ ଓ ଅନ୍ୟାନ୍ୟ ଧର୍ମ ଗ୍ରନ୍ଥମାନଙ୍କ ଉପରେ ଭିତ୍ତିକରି ସମଗ୍ର ମନୁଷ୍ୟ ସମାଜ ପାଇଁ ଏକ ଅପରିବର୍ତ୍ତିତ ସମ୍ବିଧାନ ତିଆରି କରିଛନ୍ତି । ଯେଉଁମାନେ ଏହାକୁ ପାଳନ କରିବେ ଭଗବାନ ତାଙ୍କୁ ସହାୟ ହେବେ ଓ ଯେଉଁମାନେ ଅବମାନନା କରିବେ ସେମାନେ ତାଙ୍କଦ୍ୱାରା ଦଣ୍ଡିତ ହେବେ । ଈଶ୍ୱରଙ୍କ ମତରେ ସମସ୍ତେ ଏହି ମହାନ୍ ନୀତି ବା 'ଧର୍ମ'କୁ ପାଳନ କରିବା ଉଚିତ୍ । କୌଣସି ବ୍ୟକ୍ତି ତାଙ୍କର କାର୍ଯ୍ୟକୁ ଅଗ୍ରାହ୍ୟ କରିପାରିବ ନାହିଁ । ତାଙ୍କ ର ଆଦେଶ ସର୍ବଦା ପାଳ-ନୀୟ ଓ ସେ ଏ ସମସ୍ତ ନୀତି ନିୟମର ବହିର୍ଭୂତ ।

ଅନେକ ସମୟରେ ଈଶ୍ୱର ପୃଥିବୀରେ କିପରି ତାଙ୍କର ଆଦେଶ ପାଳନ କରାଯାଉଛି ଦେଖିବା ଲାଗି ଅବତରଣ କରନ୍ତି । ଯେଉଁମାନେ ତାଙ୍କର ଆଦେଶକୁ ସମ୍ମାନ ଦିଅନ୍ତି ଓ ପାଳନ କରନ୍ତି ଭଗବାନ ସେମାନଙ୍କୁ ଅସୀମ ସ୍ନେହ ଓ ଦୟା ସହ ଆଶୀ-ର୍ବାଦ କରନ୍ତି । ତାଙ୍କର ଆଶୀର୍ବାଦ ପାଇ ସେମାନଙ୍କର ଜୀବନ ଧନ୍ୟ ହୁଏ । କିନ୍ତୁ ଯେଉଁମାନେ ଏ ଆଦେଶକୁ ଅବମାନନା କରନ୍ତି ଈଶ୍ୱର ସେମାନଙ୍କୁ ପୋଲିସ୍ ଦଣ୍ଡଦେଲା ଭଳି ଦଣ୍ଡ ଦିଅନ୍ତି କିମ୍ବା ଡାକ୍ତର ରୋଗୀକୁ ଔଷଧ ଦେଇ ଆରୋଗ୍ୟ କଲାଭଳି ସେ ତାର କଳୁଷିତ ଜୀବନରେ ପରିବର୍ତ୍ତନର ସୂତ୍ରପାତ କରନ୍ତି । ଏହାହିଁ ତାଙ୍କର ଅସୀମ କରୁଣା ।

ମହାଭାରତରେ ଏହିପରି ଦୃଷ୍ଟାନ୍ତ ଅଧିକ ମିଳେ । ଭଗବାନ କୃଷ୍ଣଙ୍କ ଅବତାର ଗ୍ରହଣ କରି ସେ ନିଜେ ପାଣ୍ଡବମାନଙ୍କର ସହାୟ ହୋଇ ତାଙ୍କୁ ଅନେକ ବିପଦରୁ ରକ୍ଷା କରିଥିଲେ । ସବୁଠାରୁ ଦୁଃଖଦାୟକ ଥିଲା କୀଚକର ଦ୍ରୌପଦୀଙ୍କ ପ୍ରତି ପ୍ରେମା-ଶକ୍ତ ଭାବ । ଦ୍ରୌପଦୀ ରାଗାନ୍ୱିତ ହୋଇ ଯୁଧିଷ୍ଠିର ଏଥିର ପ୍ରତିକାର ପାଇଁ ତାଙ୍କୁ କିଛି ଦିନ ଧୈର୍ଯ୍ୟ ଧରିବା ପାଇଁ କହିଥିବାର ତୀବ୍ର ପ୍ରତିରୋଧ କରିଥିଲେ । ଦ୍ରୌପଦୀ ପ୍ରତି-ଶୋଧରେ ଭୀମଙ୍କ ସହାୟତାରେ କୀଚକର ନାଶ କାମନା କରିଥିଲେ ।

ଏହି ପରିପ୍ରେକ୍ଷୀରେ ଅନେକଙ୍କ ମନରେ ସ୍ୱତଃ ପ୍ରଶ୍ନଉଠେ ଯେ, ଦ୍ରୌପଦୀ ଯେ କି ସତୀ,ସାଧ୍ୱୀ ଓ ପତିବ୍ରତା ରମଣୀର ଏକ ମୂର୍ତ୍ତିମନ୍ତ ଅବତାର । ସେ କ'ଣ ନିଜର ସ୍ୱାମୀ ଯୁଧିଷ୍ଠିରଙ୍କର ବିରୁଦ୍ଧାଚରଣ କରିପାରିଥିଲେ ?

ପ୍ରଥମତଃ ଯଦିଓ ଯୁଧିଷ୍ଠିର କୀଚକର ଏପରି ହୀନ କାର୍ଯ୍ୟରେ ଦ୍ରୌପଦୀଙ୍କୁ କିଛିକାଳ ରାଗ ସମ୍ବରଣ କରିବାକୁ ଆଦେଶ ଦେଇଥିଲେ ତଥାପି ସେ କୀଚକର ଏ କାର୍ଯ୍ୟରେ ଅତ୍ୟନ୍ତ କ୍ରୁଦ୍ଧ ଥିଲେ । ସେହି ସାମାନ୍ୟ ପ୍ରତିହିଂସା ମଧ୍ୟ କୀଚକର ମୃତ୍ୟୁପାଇଁ ଯଥେଷ୍ଟ ହୋଇଥିଲା । ଏଥିରୁ ଜଣାପଡ଼େ ଯେ, ଧାର୍ମିକ ବ୍ୟକ୍ତିମାନେ କିପରି ନିଜର ଧୀଶକ୍ତି ଦ୍ୱାରା ଏକ ପ୍ରବଳ ଶକ୍ତିର ଅଧିକାରୀ ହୋଇଥାଆନ୍ତି ଯାହାକି ସେମାନଙ୍କର ନୈତିକ ବଳକୁ ଦୃଢ଼କରେ ।

ଦ୍ୱିତୀୟତ ଭଗବାନ କୃଷ୍ଣ ନିଜେ ମଧ୍ୟ କୀଚକ ପରି ଏକ ଧର୍ମବିରୋଧୀ କଳୁଷିତ ବ୍ୟକ୍ତିର ଆଶୁ ବିନାଶ ଖୋଜୁଥିଲେ । ଭଗବାନଙ୍କର ଏହି ଅଭିଳାଷ ହିଁ ଦ୍ରୌପଦୀ ଦ୍ୱାରା ସାଧିତ ହୋଇଥିଲା ।

**ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥାର ବୃଦ୍ଧମାନଙ୍କ ପାଇଁ ସୁବ୍ୟବସ୍ଥା**

ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥାର ନିର୍ଦ୍ଦେଶକ କହିଛନ୍ତି ଯେ, ସମାଜରେ ସକ୍ରୀୟ ଭାବେ ଜଣେ ଦର୍ଶନିକ, ବନ୍ଧୁ ଓ ସଭ୍ୟ ଭାବରେ କାର୍ଯ୍ୟକ୍ଷମ କରାଇବା ପାଇଁ ବୃଦ୍ଧମାନଙ୍କ ନିମନ୍ତେ ବିଶ୍ୱସ୍ତରରେ କେତେକ ନୂତନ କାର୍ଯ୍ୟପନ୍ଥା ଗ୍ରହଣ କରଯିବ ।

ପୃଥିବୀରେ ବୟସ୍କ ବ୍ୟକ୍ତି (୬୦ରୁ ଊର୍ଦ୍ଧ୍ୱ)ଙ୍କର ସଂଖ୍ୟା ଆସନ୍ତା ଦୁଇ ଦଶନ୍ଧି ମଧ୍ୟରେ ଆଶାତୀତ ଭାବେ ବୃଦ୍ଧି ପାଇବାର ସମ୍ଭାବନା ଯଥେଷ୍ଟ ଥିବା ଦୃଷ୍ଟିରୁ ସମାଜ ଓ ଜନସାଧାରଣଙ୍କ ମଙ୍ଗଳ ନିମନ୍ତେ ଏପରି ପନ୍ଥା ବର୍ତ୍ତମାନ ପରିପ୍ରେକ୍ଷୀ ପାଇଁ ଅତ୍ୟନ୍ତ ଆବଶ୍ୟକ ବୋଲି ସେ ମତ ବ୍ୟକ୍ତ କରିଛନ୍ତି ।

୧୯୯୦ ମସିହାରେ ସେମାନଙ୍କର ସଂଖ୍ୟା ୩୦୦ ନିୟୁତ ଥିବା ସ୍ଥଳେ ଏହି ଶତାବ୍ଦୀର ଶେଷ ଭାଗକୁ ତାହା ୬୦୦ ନିୟୁତ ହୋଇଯିବାର ଆଶା କରଯାଉଛି । ଏହି ସଂଖ୍ୟାର ବୃଦ୍ଧି ବିଶେଷକରି ବହୁଳଭାବେ ପ୍ରଗତିଶୀଳ ରାଷ୍ଟ୍ରମାନଙ୍କରେ ଅନୁଭୂତ ହୋଇଛି ।

ସେହି ବୟସ୍କ ବ୍ୟକ୍ତିମାନଙ୍କ ମଧ୍ୟରୁ କେତେ ଜଣ ଅଗ୍ରଣୀ ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥାର ଏପରି ଉନ୍ନୟନ ମୂଳକ କାର୍ଯ୍ୟରେ ସକ୍ରୀୟ ସହଯୋଗ କରି ଏହାର ନିର୍ଦ୍ଧାରିତ ଲକ୍ଷକୁ ୨୦୦୦ ମସିହା ସୁଦ୍ଧା ହାସଲ କରିବା ପାଇଁ ତତ୍ପରତା ପ୍ରକାଶ କରିଛନ୍ତି ।

ବିଗତ ଦୁଇ କିମ୍ବା ତିନି ଦଶନ୍ଧି ମଧ୍ୟରେ ପୃଥିବୀର ଜନସଂଖ୍ୟାର ଏକ ବିରାଟ ପରିବର୍ତ୍ତନ ହୋଇଛି ଓ କେତେକ ଉନ୍ନୟନ ମୂଳକ କାର୍ଯ୍ୟର ପ୍ରଚଳନ ଫଳରେ ସାଧାରଣ ହାରାହାରି ଜୀବନ ସୀମାରେ ମଧ୍ୟ ଉନ୍ନତି ପରିଲକ୍ଷିତ ହୋଇଛି । ଫଳତଃ ସମାଜରେ ବୃଦ୍ଧ ଓ ବୟସ୍କ ଲୋକଙ୍କର ସଂଖ୍ୟା ନିଶ୍ଚୟ ଭାବେ ଦିନକୁଦିନ ବୃଦ୍ଧି ପାଇବାରେ ଲାଗିବ ।

ତାଙ୍କର ମତ ପ୍ରକାଶ କରି ନିର୍ଦ୍ଦେଶକ କହିଲେ ଯେ, ବର୍ତ୍ତମାନ ଅବସ୍ଥାରେ ଯୌଥ ପରିବାର ଗଠନ କରିବା କାର୍ଯ୍ୟକୁ ଯଥେଷ୍ଟ ଉତ୍ସାହିତ କରଯିବା ଆବଶ୍ୟକ । କାରଣ ଯୌଥ ପରିବାରରେ ହିଁ ବୃଦ୍ଧ ବା ବୟସ୍କ ବ୍ୟକ୍ତିମାନଙ୍କର ଉପଯୁକ୍ତ ଯତ୍ନ ନିଆଯାଇ ପାରିବ ।

ଏତଦ୍ ବ୍ୟତୀତ ମଧ୍ୟ ସେମାନଙ୍କର ଖାଦ୍ୟ, ସ୍ୱାସ୍ଥ୍ୟ, ପ୍ରାଥମିକ ଚିକିତ୍ସାର ସୁବିଧା, ଗୃହ ଓ ସର୍ବୋପରି ଏକ ସ୍ଥାୟୀ ଆୟପନ୍ଥା ଯୋଗାଇଦେବା ପାଇଁ କେତେକ ପଦକ୍ଷେପ ଗ୍ରହଣ କରଯିବାର ପ୍ରସ୍ତାବ ରହିଛି ।

ଏହି ସମସ୍ତ କାର୍ଯ୍ୟକୁ କାର୍ଯ୍ୟକାରୀ କରିବାପାଇଁ ବିଶ୍ୱସ୍ତରରେ ଏକ ସାଧାରଣ ଅର୍ଥ ପାଣ୍ଠି ସୃଷ୍ଟି କରିବାକୁ ସେ ମଧ୍ୟ ପ୍ରସ୍ତାବ ଦାଖିଥିଲେ । ଏଥରେ ସଂଚିତ ଅର୍ଥ କେବଳ ବୟସ୍କମାନଙ୍କ ଉନ୍ନୟନ ମୂଳକ କାର୍ଯ୍ୟରେ ଲଗାଯିବ ।

**ହଳଦିଆ ବନ୍ଦରକୁ ଅଲଗା କରି ଦିଆଯିବ**

ସରକାରଙ୍କର ଏକ ରିପୋର୍ଟରୁ ଜଣାପାଏ ଯେ, ହଳଦିଆ ବନ୍ଦରକୁ କଲିକତା ବନ୍ଦର ଠାରୁ ଦିନେ ନା ଦିନେ ଅଲଗା କରି ଦିଆଯିବ । ହଳଦିଆ ଭାରତର ଏକ ଉଚ୍ଚ-ମାନବର ବନ୍ଦର ଓ ଏଠାରେ ଅଧିକ ଦ୍ରବ୍ୟର ଆମଦାନି ଓ ରପ୍ତାନୀ କାରବାର ଚାଲେ । ସେହି ରିପୋର୍ଟ ଅନୁଯାୟୀ ସମୁଦାୟ ୧୦ ନିୟୁତ ଦ୍ରବ୍ୟ କାରବାର ମଧ୍ୟରୁ ହଳଦିଆ ବନ୍ଦର କେବଳ ୫.୫ ନିୟୁତ ଓ କଲିକତା ବନ୍ଦର ୪ ୫ ନିୟୁତ ଟନ୍ ଦ୍ରବ୍ୟ କାରବାର କରିଥାଏ । କେବଳ କ୍ରୁଡ୍ ତେଲର ଆମଦାନି ହିଁ ହଳଦିଆ ବନ୍ଦରକୁ ଅଧିକ କାର୍ଯ୍ୟକ୍ଷମ କରି ପାରିଛି ।

ଏକ ପ୍ରସ୍ତାବରୁ ଜଣପାଏ ଯେ, ହଳଦିଆ ବନ୍ଦରକୁ ସଂପୂର୍ଣ୍ଣ ଅଲଗା କରି ରଖା-ଗଲେ ଏହା ଅଧିକ କାର୍ଯ୍ୟକ୍ଷମ କରିହେବ ଯାହାକି କେବଳ ପଶ୍ଚିମବଙ୍ଗ ପାଇଁ ନୁହେଁ ବରଂ ସମଗ୍ର ଭାରତ ପାଇଁ ଲାଭଜନକ ହୋଇପାରିବ ।

ହଳଦିଆ ବନ୍ଦରର ଅଧିକ ଉନ୍ନତି ପାଇଁ ଏହି ବନ୍ଦର ସଂଯୁକ୍ତ ଥିବା ରାଜ ରାସ୍ତାକୁ ଅଧିକ ଉନ୍ନତ କରିବାକୁ ପଡ଼ିବ ଯାହାଫଳରେ କଞ୍ଚାମାଲ ଓ ଅନ୍ୟାନ୍ୟ ପଦାର୍ଥ ଗୁଡ଼ିକର ସୁପରି ବହନ ହୋଇପାରିବ ।

ଏତଦ୍ ବ୍ୟତୀତ ହଳଦିଆ ବନ୍ଦରରୁ ଆହ୍ଲାବାଦକୁ ଥିବା ଜଳପଥର ଜାତୀୟ-କାରଣ ହେବା ପରେ ଏହାର ଉନ୍ନତି ପାଇଁ ପଦକ୍ଷେପ ତୁରନ୍ତ ନିଆଯିବ ବୋଲି ପାର୍ଲାମେଣ୍ଟରେ ପ୍ରସ୍ତାବ ହୋଇଛି ।

**୧୫ ଜଣ ମହୁ ସଂଗ୍ରହକାରୀଙ୍କୁ ବାଘ ମାରିଦେଇଛି**

ସୁନ୍ଦର ବନରେ ମହୁ ସଂଗ୍ରହ କରିବା କାଳରେ ୧୫ ଜଣ ଲୋକଙ୍କୁ କେତେ

ଗୁଡ଼ାଏ ମଣିଷଖିଆ ବାଘ ମାରି ଦେଇଛି । ସେମାନଙ୍କ ମଧ୍ୟରୁ ୧୪ ଜଣ ପ୍ରୋଜେକ୍ଟ ଟାଇଗର୍ ଥିବା ସ୍ଥାନ ବାସିର୍‌ହାଟ୍ ଅଞ୍ଚଳରେ ଓ ଜଣେ ନାମଖାନା ଅଞ୍ଚଳରେ ମରିଛି । ଏହି ବାସିର୍‌ହାଟ୍ ଅଞ୍ଚଳରେ ବାଘମାନଙ୍କର ସଂଖ୍ୟା ଅଧିକ, ସୁନ୍ଦର ବନର ୧୯୭୮ ମସିହାର ଗଣନା ଅନୁଯାୟୀ ୨୦୫ଟି ବାଘ ଏହି ବାସିରହାଟ ପାହାଡ଼ ଅଞ୍ଚଳରେ ରୁହନ୍ତି ।

ଏହି ଅଞ୍ଚଳରେ ବାଘ ସଂରକ୍ଷଣ ଦାୟିତ୍ୱରେ ଥିବା କର୍ତ୍ତୃପକ୍ଷମାନେ କର୍ମଚାରୀମାନଙ୍କୁ ରକ୍ଷା କରିବା ପାଇଁ ଏକପ୍ରକାର ନୂଆ ଯୋଜନା ବାହାର କଲେ । ଏହି ମହୁ ସଂଗ୍ରହ ଋତୁରେ ସାଧାରଣତଃ ଜଙ୍ଗଲିଆମାନେ ଏକ ଫାଇବର ଗ୍ଲାସ୍‌ରେ ନିର୍ମିତ ଏକ ଯନ୍ତ୍ର ପିନ୍ଧିବା ଦ୍ୱାରା ସେମାନଙ୍କର ମୁଣ୍ଡ ଓ ବେକ ସର୍ବଦା ଆବୃତ ହୋଇଥାଏ । କାରଣ ଏହା ଅନୁସନ୍ଧାନରୁ ଜଣାଯାଇଛି ଯେ, ବାଘ ଆକ୍ରମଣ କାଳରେ ସର୍ବଦା ଶିକାରର ବେକ ଓ ମୁଣ୍ଡକୁ ଆକ୍ରମଣ କରେ ।

ସୁନ୍ଦରବନରୁ ମହୁ ସାଧାରଣତଃ ଏପ୍ରିଲ ଓ ଜୁନ୍ ମାସ ମଧ୍ୟରେ ସଂଗ୍ରହ କରଯାଏ । କେବଳ ବାସିରହାଟ୍ ଅଞ୍ଚଳରେ ୪୦୦ କୁଇଣ୍ଟାଲ ମହୁ ମିଳେ । ଏହି ମହୁ ସଂଗ୍ରହ କରିବାକୁ ଯାଇ ଲୋକମାନେ ଅନେକ ସମୟରେ ବାଘର ଶିକାର ହୋଇଥାନ୍ତି ।

## ଅବିବାହିତ ମାତୃତ୍ୱ

ଋଷରେ ଜନ୍ମହାର ବର୍ଷକୁ ବର୍ଷ କମ୍ ହେଉଥିବାରୁ ସେଠାରେ ଅବିବାହିତ ମହିଳାମାନେ ସନ୍ତାନ ପ୍ରସବ କଲେ ଏହା ଗ୍ରହଣଯୋଗ୍ୟ ବୋଲି କୁହାଯାଉଛି । ବିବାହିତ ଜୀବନ ଠାରୁ ଅବିବାହିତ ଅବସ୍ଥାରେ ସନ୍ତାନ ଜନ୍ମରେ ଅଧିକ ଆନନ୍ଦ ଥାଏ ବୋଲି ସେଠାରେ ମତ ପ୍ରକାଶ ପାଇଛି ।

ଏଥିପାଇଁ ସେମାନେ ଗର୍ଭପାତ କରିବାର ଆବଶ୍ୟକତା ନାହିଁ ବୋଲି ମଧ୍ୟ କହିଛନ୍ତି । ବର୍ଷକୁ ବର୍ଷ ଅଧିକ ଗର୍ଭପାତ ହେଉଥିବାରୁ ଜଣେ ସୋଭିଏତ ବିଶେଷଜ୍ଞ ଦୁଃଖ ପ୍ରକାଶ କରିଛନ୍ତି । ତାଙ୍କ ମତରେ କେବଳ ଗୋଟିଏ ପରିବାରରେ ତିନିଗୋଟି ସନ୍ତାନ ନ ଥିଲେ ତାହା ଏକ ସାଧାରଣ ପରିବାର । ଋଷରେ ୧୮ ବର୍ଷରୁ ଊର୍ଦ୍ଧ୍ୱ ଯେ କୌଣସି ମହିଳାଙ୍କ ପାଇଁ ଗର୍ଭପାତର ଔଷଧ ସୁବିଧାରେ ମିଳୁଛି । ସେଠାରେ ବାର୍ଷିକ ଗର୍ଭପାତର କୌଣସି ହିସାବ ରଖାଯାଏ ନାହିଁ କିନ୍ତୁ ୧୯୭୬ରେ ଇଉନାଇଟେଡ୍ ନେସନସ୍ ପବ୍ଲି-କେସନ କାଉନସିଲ୍‌ର ଏକ ରିପୋର୍ଟରୁ ଜଣାଯାଏ ଯେ, ପୃଥିବୀର ଅନ୍ୟ ଯେ କୌଣସି ଦେଶ ତୁଳନାରେ ଋଷରେ ଗର୍ଭପାତର ହାର ସର୍ବାଧିକ । ଏହି ରିପୋର୍ଟରୁ ଅନୁମି

ମଧ୍ୟ ଜଣାଯାଏ ଯେ, ପ୍ରତ୍ୟେକ ବର୍ଷ ଭାରତରେ ପ୍ରାୟ ୧୦ ନିୟୁତ ବା ପ୍ରତି ୧୦୦୦ ଜଣ ମହିଳାଙ୍କ ମଧ୍ୟରୁ ୧୮୦ ଜଣ ମହିଳାଙ୍କର ଗର୍ଭପାତ ହୁଏ । ଏହି ଗର୍ଭପାତ ମହିଳା-ମାନଙ୍କ ବୟସ ୧୫ ରୁ ୪୪ ବର୍ଷ ମଧ୍ୟରେ ।

**କ୍ୟାପ୍ସୁ୍ୟଲିକମ ଅନେକ ରୋଗର ଔଷଧ**

ଗୋଟିଏ ଏକ ପରୀକ୍ଷାରୁ ଜଣାଯାଏ ଯେ, କ୍ୟାପ୍ସୁ୍ୟଲିକମର ଅନେକ ରୋଗ ଆରୋଗ୍ୟ କରିବାର ଶକ୍ତି ଅଛି ।

ନିକଟରେ ଏକ ଘରୋଇ କ୍ୟାପ୍ସୁ୍ୟଲିକମ ଉତ୍ପାଦନ ସଂସ୍ଥା ଅଧିକ ଉଚ୍ଚମାନର ଲିକମ ଉତ୍ପାଦନ କରୁଥିବାରୁ ଟ୍ରାନ୍ସ ଓ୍ୱାର୍ଲ୍ଡ ଟ୍ରେଡ୍ ଫେୟାର ଓ ଇଣ୍ଡର୍ ନ୍ୟାସନାଲ ଟ୍ରେଡ୍ ଫେୟାର ପୁରସ୍କାର ପାଇଛି । ପରୀକ୍ଷାରୁ ଜଣାଯାଏ ଯେ, ଏହି କ୍ୟାପ୍ସୁ୍ୟଲିକମ୍‌ରେ ଗ୍ଲୁକୋଜ୍, ପ୍ରୋଟିନ୍‌ସ, ମ୍ୟାଲିକ୍, ଏସିଡ୍, ଟାନିନ୍, କାଲ୍‌ସିୟମ୍, ଫସ୍‌ଫରସ୍ ପେଣ୍ଟୋକ୍‌ସାଇଡ୍ ଓ ଭିଟାମିନ୍ 'ସି' ଅଛି । କ୍ୟାପ୍ସୁ୍ୟଲିକମ୍ ସାଧାରଣତଃ ଜ୍ୱର, ଥଣ୍ଡା, ଫ୍ଲୁ, ଦାନ୍ତବିନ୍ଧା, ମାଂସପେଶୀ ସମ୍ବନ୍ଧୀୟ ଯନ୍ତ୍ରଣା, ନିମ୍ନ ଧରଣର ରକ୍ତଚାପ ଏବଂ କଲେରା ରୋଗ ପ୍ରଭୃତିର ଚିକିତ୍ସାରେ ଯଥେଷ୍ଟ ସାହାଯ୍ୟ କରେ ।

**ଭାରତରେ ବାଘ ସଂଖ୍ୟା ଅଧିକ**

ପୃଥିବୀରେ ସର୍ବାଧିକ ସଂଖ୍ୟାରେ ବାଘ ଭାରତରେ ହିଁ ବାସ କରନ୍ତି । ପ୍ରୋଜେକ୍ଟ ଟାଇଗର'ର ନିର୍ଦ୍ଦେଶକ ଏହା ପ୍ରକାଶ କରିଛନ୍ତି, ତାଙ୍କଠାରୁ ପ୍ରକାଶ ଯେ ଭାରତରେ ୧୯୭୨ରେ ବାଘସଂଖ୍ୟା ୮୨୭ ଥିବା ସ୍ଥଳେ ୧୯୭୯ରେ ତାହା ୩୦୧୫ ଥିଲା ।

ଭାରତର ସୁନ୍ଦରବନରେ ରୟାଲ୍ ବେଙ୍ଗଲ୍ ଟାଇଗର୍‌ମାନେ ରୁହନ୍ତି । ସେଠାରେ ୧୯୭୨ରେ ୧୮୪ ବାଘ ଥିବା ସ୍ଥଳେ ୧୯୭୯ରେ ୨୦୫ଟି ବାଘ ଥିଲେ ।

ମଧ୍ୟ ପ୍ରଦେଶରେ ଭାରତର ସବୁଠାରୁ ବେଶୀ ବାଘ ରୁହନ୍ତି । ସେମାନଙ୍କର ସଂଖ୍ୟା ସେଠାରେ ପ୍ରାୟ ୭୦୦ ରୁ ଊର୍ଦ୍ଧ୍ୱ ।

**ମଙ୍ଗୋଲିଆରେ ପଶୁ ପାଳନ**

ନିକଟରେ ଋଷ ସାହାଯ୍ୟରେ ଉଲାନ୍‌ବାଟର୍‌ଠାରେ ଏକ ଆଧୁନିକ ଧରଣର ପଶୁପାଳନ କେନ୍ଦ୍ର ସ୍ଥାପନ କରାଯାଇଛି । ଏଠାରୁ ବାର୍ଷିକ ୩୦ ନିୟୁତ ଡଲାର ମୂଲ୍ୟର ଦୁଗ୍ଧ ଓ ଦୁଗ୍ଧଜାତ ପଦାର୍ଥ ଉତ୍ପାଦନ କରାଯାଇ ପାରିବ ବୋଲି ଏକ ରିପୋର୍ଟରେ କୁହାଯାଇଛି ।

କିନ୍ତୁ ବର୍ତ୍ତମାନ ସମୟରେ ଲୋକମାନଙ୍କର ଦୁଗ୍ଧ ଓ ଦୁଗ୍ଧଜାତ ପଦାର୍ଥ ପାଇଁ ଅଧିକ ଆବଶ୍ୟକତା ବଢୁଥିବା ଦୃଷ୍ଟିରୁ ଉଲାନବାଟରର ନିକଟବର୍ତ୍ତୀ ସ୍ଥାନ-ମାନଙ୍କରେ ୨୦ରୁ ଅଧିକ ଯାନ୍ତ୍ରିକ ପଶୁପାଳନ କେନ୍ଦ୍ରମାନ ସ୍ଥାପନ କରାଯାଇଛି ।

**ପ୍ଲାଷ୍ଟିକ କାର୍**

ଏ ହେଲା ପ୍ଲାଷ୍ଟିକର ଯୁଗ । ସାମାନ୍ୟ କଲମ ଠାରୁ ଆରମ୍ଭ କରି କୋଠାବାଡ଼ି ପର୍ଯ୍ୟନ୍ତ ସବୁ ପ୍ଲାଷ୍ଟିକରେ ତିଆରି ହେଲଣି । କାର୍‌ଟା ଯାହା ବାକି ଥିଲା । କିନ୍ତୁ ବାକି ରଖିବାକୁ କିଏ ପ୍ରସ୍ତୁତ । ଏବେ ଯୁକ୍ତରାଷ୍ଟ୍ରର ଏକ ସ୍ପୋର୍ଟସ୍‌କାର୍ ଯୋଗାଣକାରୀ କମ୍ପାନୀ ପ୍ଲାଷ୍ଟିକ କାରର ଏକ ମଡେଲ ପ୍ରସ୍ତୁତ କରିଅଛନ୍ତି ।

ଜେନେରାଲ ମୋଟର୍ସର ଚଳିତ ବର୍ଷର ଉତ୍ପାଦନ ହେଲା PIBRO 2 m 4 । କିନ୍ତୁ ଆଗାମୀ ବର୍ଷକୁ ଏହା 2m6 ହେବାକୁ ଯାଉଛି । ଏହି କାରଟିକୁ ଯୁକ୍ତରାଷ୍ଟ୍ରରୁ ଉତ୍ପାଦିତ ସର୍ବାଧୁନିକ କାର୍ ହେବବୋଲି କୁହାଯାଉଛି । ଏହାର ଅଦ୍ୱିତୀୟ ହେବାର କାରଣ ହେଲା ଏହାର ସଂପୂର୍ଣ୍ଣ ପ୍ଲାଷ୍ଟିକ ବଡ଼ି । ଏହି ପ୍ଲାଷ୍ଟିକ ବଡ଼ିର ପ୍ରଥମ ସୁବିଧା- ହେଲା ଏଥିରେ କଳଙ୍କି ଲାଗେ ନାହିଁ । ତାହାଛଡ଼ା ଏହା ଷ୍ଟିଲ ଭଳି ଶକ୍ତ ଏବଂ ଷ୍ଟିଲ ଅପେକ୍ଷା ତିନିଗୁଣ ଦୀର୍ଘସ୍ଥାୟୀ । ଏହାର ଯନ୍ତ୍ରପାତି ଅଦଳବଦଳ କରିବା ମଧ୍ୟ ସହଜ ।

ଏହି କାର୍‌ର ପ୍ୟାନେଲ ଛାତ, ହେଡଲ୍ୟାମ୍ପ ଡୋର ଏବଂ ଛାତ ଟ୍ରଙ୍କ ରୂଦର ଛାଞ୍ଚରେ ତିଆରି ପଦାର୍ଥ ଦ୍ୱାରା ନିର୍ମିତ ହୋଇଥିବା ସ୍ଥଳେ Front Fender ଦ୍ୱାରା ଇତ୍ୟାଦି ଅପେକ୍ଷାକୃତ ଦୁର୍ବଳ ଅଂଶଗୁଡ଼ିକ ନମନୀୟ ପ୍ରିଭିଥେନ ଦ୍ୱାରା ନିର୍ମିତ । ଏଥିରେ ଦାଗ ପଡ଼େନାହିଁ ।

କିନ୍ତୁ ଇଞ୍ଜିନିୟରମାନଙ୍କର ପ୍ରଥମ ଯୋଜନା ସ୍ପୋର୍ଟସ କାର ନଥିଲା । ସେମାନେ ଦୁଇସିଟ୍ ବିଶିଷ୍ଟ ଏକ ସ୍ୱଳ୍ପ ବ୍ୟୟସାଧ୍ୟ କାର ନିର୍ମାଣ କରିବାର ପରିକଳ୍ପନା କରିଥିଲେ । ଏହି ଯୋଜନା ଅନୁଯାୟୀ ନିର୍ମିତ କାର୍‌ର ଇଞ୍ଜିନ୍ ଆଗରେ ଥିଲା । କିନ୍ତୁ ଏହାଦ୍ୱାରା କାର୍‌ର ସମ୍ମୁଖ ଭାଗ ୫୮ ଇଞ୍ଚ ଲମ୍ବା ଏବଂ ଉଚ୍ଚା ହୋଇଗଲା, ତେଣୁ ଇଞ୍ଜିନକୁ ମଝିକୁ ଆଣିବାକୁ ହେଲା । ଏହା କାର୍‌କୁ ଅପେକ୍ଷାକୃତ ଉଚ୍ଚକୋଟୀର ହେବାରେ ସାହାଯ୍ୟ କଲା ଏବଂ ଏହାକୁ ଚଳାଇବା ମଧ୍ୟ ସହଜ ହୋଇଗଲା । PIBRO-2 m 4ର ଇଞ୍ଜିନ ମଧ୍ୟ ମଝିରେ ଥିବାରୁ ଏହା ଇଞ୍ଜିନିୟରମାନଙ୍କୁ ଏକ ପ୍ଲାଷ୍ଟିକ୍ ରେସିଂ କାର୍ ନିର୍ମାଣ କରିବା ଦିଗରେ ପଥପ୍ରଦର୍ଶକ ହେଲା ।

ଏହି କାର୍ ଆସନ୍ତା ବର୍ଷ ବଜାରକୁ ଆସିବ ।

**ବୃକ୍ଷ ପ୍ରାଚୀର**

ଚୀନ ଦେଶର ଲୋକମାନେ ସେମାନଙ୍କ ମୃତ୍ତିକାକ୍ଷୟ ନ ହେବାପାଇଁ ଅଧିକ ଗଛ ଲଗାଇବାପାଇଁ ସ୍ଥିର କରିଛନ୍ତି । ଏହି ବୃକ୍ଷ ପ୍ରାଚୀର ଯୋଜନା ସଫଳ ହୁଏ, ତେବେ କେବଳ ମୃତ୍ତିକାକ୍ଷୟ ନୁହେଁ, ବାତ୍ୟା ଜନିତ କ୍ଷୟ କ୍ଷତିରୁ ମଧ୍ୟ ରକ୍ଷା ମିଳିବ ।

ବଣେ କୃଷି ମୁଖପାତ୍ର ପ୍ରକାଶ କରିଛନ୍ତି ଯେ, ୨୦୦୦ ମସିହା ସୁଦ୍ଧା ଚୀନର ଏକ ପଞ୍ଚମାଂଶ ବୃକ୍ଷ ହେବ ।

## ସୁପ୍ରିମ କୋର୍ଟରେ ବକେୟା ମୋକଦ୍ଦମା

୩୧ ଡିସେମ୍ବର ୧୯୮୩ ମସିହା ସୁଦ୍ଧା ସର୍ବମୋଟ ୭୩୨୦୫ଟି ମୋକଦ୍ଦମା ଭାରତର ସର୍ବୋଚ୍ଚ ନ୍ୟାୟାଳୟରେ ଏ ଯାବତ ବିଚାର ନହୋଇ ପଡ଼ିରହିଛି । ଏହା ବ୍ୟତୀତ ୬୩,୧୦୭ ଅନ୍ୟାନ୍ୟ ମୋକଦ୍ଦମା ଗୁଡ଼ିକର ମଧ୍ୟ ବିଚାର ନ ହୋଇ ପଡ଼ିରହିଛି । ସେହିପରି ପ୍ରାଦେଶିକ ଉଚ୍ଚ ନ୍ୟାୟାଳୟଗୁଡ଼ିକରେ ଏହି ସମୟ ମଧ୍ୟରେ ସର୍ବମୋଟ ୧୮୬୮୪୨ ଟି ମୋକଦ୍ଦମା ଆଲ୍ଲାହାବାଦ ହାଇକୋର୍ଟରେ ୧୨୫୪୬୫ଟି ମୋକଦ୍ଦମା ମଧ୍ୟ ବିଚାର ନ ହୋଇ ପଡ଼ିରହିଥିଲା । ଅନ୍ୟାନ୍ୟ ପ୍ରାଦେଶିକ ହାଇକୋର୍ଟମାନଙ୍କଠାରୁ ଏହି ଦୁଇ ହାଇକୋର୍ଟରେ ବକେୟା ରହିଥିବା ମୋକଦ୍ଦମା ଅଧିକ ।

## ପୃଥିବୀର ଷ୍ଟାଣ୍ଡାର୍ଡ ଦିବସ

ସମଗ୍ର ପୃଥିବୀରେ ପୃଥିବୀର ଷ୍ଟାଣ୍ଡାର୍ଡ ଦିବସ ଭାବରେ ଅକ୍ଟୋବର ୧୪ ତାରିଖଟିକୁ ପାଳନ କରଯାଏ । ଏହା ଆନ୍ତର୍ଜାତୀୟ ସାଧାରଣତାକୁ ଚିହ୍ନିତ କରଇଥାଏ । ଏହାର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଆମମାନଙ୍କ ମଧ୍ୟରେ ସମତା ବଜାୟ ରଖିବାପାଇଁ ଏହା ଉଚିତ୍ତ ।

## ୧୯୮୩ ବର୍ଷରେ ସରକାର ଅପରାଧ ନିୟନ୍ତ୍ରଣ କରିପାରିଛନ୍ତି

୧୯୮୩ ବର୍ଷରେ ଓଡ଼ିଶା ସରକାର ତାଙ୍କ ସରକାରର ତୃତୀୟ ବର୍ଷ ପୂର୍ତ୍ତି ଉପଲକ୍ଷେ ପ୍ରକାଶ କରିଛନ୍ତି ଯେ, ତାଙ୍କ ସରକାର ମୋଟାମୋଟି ଭାବରେ ୧୯୮୩ ବର୍ଷର ଅପରାଧ ନିୟନ୍ତ୍ରଣ କରିବାକୁ ସକ୍ଷମ ହୋଇ ପାରିଛନ୍ତି । ଏକ ରିପୋର୍ଟରୁ ପ୍ରକାଶ ଯେ, ୧୯୮୨ରେ ରାଜ୍ୟରେ ଅପରାଧ ସଂଖ୍ୟା ଶତକଡ଼ା ୭୭.୭ ଥିବା ବେଳେ ୧୯୮୩ ମସିହାରେ ଏହି ସଂଖ୍ୟା ଶତକଡ଼ା ୬୭.୬ କୁ କମି ଆସିଛି । ଏହି ରିପୋର୍ଟରେ ଆହୁରି ଦର୍ଶାଯାଇଛି ଯେ, ଏହି ଅପରାଧ ୧୯୮୪ ରେ ଆହୁରି କମାଯାଇ ପାରିବ । ରିପୋର୍ଟରେ ଆହୁରି ଉଲ୍ଲେଖ କରଯାଇଛି ଯେ, କେବଳ ଅପରାଧ ନୁହେଁ, ଅନ୍ୟ କ୍ଷେତ୍ରରେ ମଧ୍ୟ ଏହି ସରକାର ଉଲ୍ଲେଖନୀୟ ଅଗ୍ରଗତି କରିପାରିଛନ୍ତି ।

## ଭାରତୀୟ ଆମଦାନି ରପ୍ତାନୀ ବ୍ୟାଙ୍କର ଲାଭ

ଭାରତୀୟ ଆମଦାନି ରପ୍ତାନୀ ବ୍ୟାଙ୍କ ୧୯୮୩ ବର୍ଷରେ ନେଟ ୫୦କୋଟି ୯୦ ଲକ୍ଷ ଟଙ୍କା ଲାଭ କରିଛି ।

ବ୍ୟାଙ୍କର ଅଧ୍ୟକ୍ଷ ତଥା ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଆର.ସି. ଶାହ ବ୍ୟାଙ୍କର ଲାଭାଂଶ

ଚାବଦରେ ୨ କୋଟି ଟଙ୍କାର ଏକ ଚେକ୍ କେନ୍ଦ୍ର ଅର୍ଥ ମନ୍ତ୍ରୀଙ୍କୁ ଦେଇଛନ୍ତି । ଏହି ବ୍ୟାଙ୍କ ୧୯୮୨ରେ ପ୍ରତିଷ୍ଠା କରଯାଇଥିଲା ।

## ପ୍ରତି ଜିଲ୍ଲାରେ ଗୋଟିଏ ଲେଖାଏଁ ଧନ୍ଦାମୂଳକ ଶିକ୍ଷା କେନ୍ଦ୍ର ଖୋଲାଯିବ

ପ୍ରତି ଜିଲ୍ଲାରେ ଗୋଟିଏ ବା ତହିଁରୁ ଅଧିକ ଧନ୍ଦାମୂଳକ ଶିକ୍ଷାକେନ୍ଦ୍ର ଖୋଲାଯିବାର ପ୍ରସ୍ତାବ ରହିଛି ଏବଂ ଏହି ଯୋଜନା ସପ୍ତମ ଯୋଜନା ଶେଷସୁଦ୍ଧା ପୂରଣ ହୋଇଯିବ ବୋଲି ଆଶା କରଯାଉଛି । ଶିକ୍ଷିତ ବେକାରମାନଙ୍କୁ ଅଧିକ କର୍ମନିଯୁକ୍ତି ଦେବାପାଇଁ ଏହି କାର୍ଯ୍ୟକ୍ରମ ହାତକୁ ନିଆଯାଇଛି । ଆମ ଦେଶର ଯୁବକମାନଙ୍କୁ କଳା ସଂପର୍କର ଅଧିକ ନ ପଢ଼ାଇ ଧନ୍ଦା ବା ବୈଷୟିକ ଶିକ୍ଷା ଦେବାଦ୍ୱାରା ସେମାନେ ଅଧିକ ଆତ୍ମନିଯୁକ୍ତି ପାଇପାରିବେ ବୋଲି ଏଥିରେ କୁହାଯାଇଛି । ଏଥିପାଇଁ ସପ୍ତମ ଯୋଜନାରେ ମଧ୍ୟ ବ୍ୟୟ ବରାଦ କରଯାଇଛି ।

## କଳାହାଣ୍ଡି ଜିଲ୍ଲାରେ ମହାବଳ ବାଘ ସଂଖ୍ୟା ହ୍ରାସ ପାଉଛି

କଳାହାଣ୍ଡି ଜିଲ୍ଲାରେ ମହାବଳ ବାଘସଂଖ୍ୟା କ୍ରମେ ହ୍ରାସ ପାଉଛି ବୋଲି ସରକାରୀ ସୂତ୍ରରୁ ଜଣାପଡ଼ୁଛି ।

ଏକ ସୂତ୍ରରୁ ପ୍ରକାଶ ଯେ, ୧୯୬୮ ମସିହାରେ କଳାହାଣ୍ଡି ଜିଲ୍ଲାରେ ୪୧ଟି ମହାବଳ ବାଘ ଥିଲେ । ଚଳିତ ବର୍ଷ ୧୭ଟି ମହାବଳ ବାଘ ଅଛନ୍ତି ।

ଏଇ କେତେବର୍ଷ ହେଲା ବ୍ୟାପକ ଜଙ୍ଗଲ ନଷ୍ଟ, ପରିବେଶର ଦ୍ରୁତ ପରିବର୍ତ୍ତନ ଏବଂ ବିଭିନ୍ନ ପ୍ରକାରର ଫୁଲ ଓ ଉଦ୍ଭିଦକୁ ନଷ୍ଟ କରିଦିଆଯିବା ହେତୁ ବାଘସଂଖ୍ୟା ହ୍ରାସ ପାଉଛି । ନୀଳଗାଈ, କଳାହରିଣ, ବଣୁଆ ମଇଁଷି ଓ ଚିତାବାଘ ଭଳି ପ୍ରାଣୀମାନେ ମଧ୍ୟ ନିଶ୍ଚିହ୍ନ ହୋଇଯାଉଛନ୍ତି । ବିରଳପକ୍ଷୀ, ଚିତା ହରିଣ, ମୟୂରମାନଙ୍କୁ ବହୁ ସଂଖ୍ୟାରେ ଶିକାରୀମାନେ ହତ୍ୟା କରୁଛନ୍ତି ।

## ମୋଟ ୪ ହଜାର ୯୦୩ ଗିରଫ

ପଂଜାବ ସମସ୍ୟା କଥା ଏବେ ଆଉ କାହାକୁ ଅଜଣା ନାହିଁ । ସ୍ୱର୍ଣ୍ଣ ମନ୍ଦିର ମଧ୍ୟରେ ସୈନ୍ୟ ବାହିନୀ ପ୍ରବେଶ କରିବା ପରେ ଅବସ୍ଥା ଶାନ୍ତ ପଡ଼ିଥିଲା । ତେବେ ବି ଉଗ୍ରପନ୍ଥୀମାନେ ସେମାନଙ୍କ କାର୍ଯ୍ୟ ଚଳୁ ରଖିଛନ୍ତି । ସେଥିପାଇଁ ଏପର୍ଯ୍ୟନ୍ତ ସର୍ବମୋଟ ୪ହଜାର ୯୦୩ ଜଣ ଉଗ୍ରପନ୍ଥୀ ଗିରଫ ହେଲେଣି ।

# ଭାରତର ରାଜ୍ୟ ପରିଚୟ

## ସିକ୍‌କୀମ

| | | |
|---|---|---|
| କ୍ଷେତ୍ରଫଳ | — | ୭୨୯୯ ବର୍ଗକିଲୋମିଟାର |
| ଜନସଂଖ୍ୟା | — | ୩୧୫, ୬୮୨ |
| ରାଜଧାନୀ | — | ଗାଙ୍ଗ୍‌ଟକ |
| ଜିଲ୍ଲାସଂଖ୍ୟା | — | ୪ |
| ମୁଖ୍ୟ ଭାଷା | — | ଭୁଟିୟା, ନେପାଳୀ, ଲେପଚ୍ଚ ଓ ଇଂରାଜୀ । |
| ଉଚ୍ଚ ନ୍ୟାୟାଳୟ | — | ହାଇକୋର୍ଟ (ଗାଙ୍ଗଟକ) |

**ଅବସ୍ଥିତି—**

ପୂର୍ବ ହିମାଳୟରେ ଅବସ୍ଥିତ । ଉତ୍ତରରେ ତିବ୍ବତ (ଚୀନ), ପୂର୍ବରେ ତିବ୍ବତ ଓ ଭୁଟାନ, ଦକ୍ଷିଣରେ ପଶ୍ଚିମବଙ୍ଗ ଓ ପଶ୍ଚିମରେ ନେପାଳ ।

**ଇତିହାସ—**

୧୯୭୫ ମସିହା ଏପ୍ରିଲ ୨୬ ତାରିଖରୁ ସିକ୍‌କୀମ ଭାରତର ବିଧିବଦ୍ଧ ରାଜ୍ୟ ହେଲା । ୧୯୭୫ ମାର୍ଚ୍ଚ ୧ ତାରିଖରେ ଏହା ଏକ ଆସୋସିଏଟ ଷ୍ଟେଟ୍ ଥିଲା । ୧୯୭୫ ମସିହା ଏପ୍ରିଲ ୧୪ ତାରିଖରେ ସିକ୍‌କୀମର ଜନମତ ଅନୁସାରେ ସିକ୍‌କୀମ ଭାରତରେ ଯୋଗ ଦେଲା ।

ସିକ୍‌କୀମ ଭାରତର ଦ୍ୱାବିଂଶତମ ରାଜ୍ୟ । ଲେପଚ୍ଚ, ଭୁଟିୟା ଓ ତୁର୍ଖା ସିକ୍‌କୀମର ମୁଖ୍ୟ ଅଧିବାସୀ ।

**କୃଷି—**

କୃଷି ଏ ରାଜ୍ୟର ମୁଖ୍ୟ ଜୀବିକା । ଧାନ, ମକ୍‌କା, ମିଲେଟ୍ ଓ ବାର୍ଲି ପ୍ରଧାନ ଫସଲ । ଏହା ବ୍ୟତୀତ ଅଳେଇଚ, କମଳାଲେମ୍ବୁ, ଆଳୁ, ଆପଲ ଓ ସପୁରୀ ଏଠାରେ ପ୍ରଚୁର ପରିମାଣରେ ଉତ୍ପାଦିତ ହୁଏ । ଏ ରାଜ୍ୟର ଏକ ତୃତୀୟାଂଶ ଭୂମି ଜଙ୍ଗଲରେ ପୂର୍ଣ୍ଣ ।

**ଶିଳ୍ପ—**

୧୯୬୦ ମସିହାରେ ରଙ୍ଗପୋରେ ସିକ୍‌କୀମ ମାଇନିଙ୍ଗ କର୍ପୋରେସନ ପ୍ରତିଷ୍ଠିତ ହେଲା । ଏଠାରେ ତମ୍ବା, ସୀସା ଓ ଦସ୍ତା ଉତ୍ପାଦିତ ହୁଏ । ଏବେ ସୁନା, ରୁପା, ତମ୍ବା ଓ ଦସ୍ତା ଏକତ୍ରିତ ଅବସ୍ଥାରେ ଆବିଷ୍କୃତ ହୋଇଛି । ପରମ୍ପରାଗତ ଶିଳ୍ପ ମଧ୍ୟରେ ପଶମ ପୋଷାକ ଓ କାର୍ପେଟ ତିଆରି ପ୍ରଧାନ । ସିଙ୍ଗଟାଇମରେ ଫଳ ସଂରକ୍ଷଣ କାରଖାନା, ରଙ୍ଗପୋରେ ମଦ ଉତ୍ପାଦନ କାରଖାନା, ମାଝିଟାରରେ ଚମଡ଼ା କାରଖାନା ମଧ୍ୟ

ସିକ୍‌କିମର ମହତ୍ତ୍ୱପୂର୍ଣ୍ଣ ଶିଳ୍ପ । ଏହା ବ୍ୟତୀତ ଗାଙ୍ଗଟକରେ ସିକ୍‌କିମର ଇଲେକ-ଟ୍ରନିକ୍‌ସ ଓ ମୂଲ୍ୟବାନ ପ୍ରସ୍ତର ଉତ୍ପାଦିତ ହେଉଛି । ବୋରଡାଙ୍ଗରେ ଏକ ବିରାଟ କାଠ କାରଖାନା ଅଛି । ଏହା ବ୍ୟତୀତ ଗାଙ୍ଗଟକରେ ଘଣ୍ଟା ତିଆରି କାରଖାନା ମଧ୍ୟ ଅଛି ।

**ସେଚ—**

ସିକ୍‌କିମରେ ସେଚର ବହୁଳ ବ୍ୟବସ୍ଥା ଅଛି ।

**ଶକ୍ତି ଉତ୍ପାଦନ କେନ୍ଦ୍ର—**

ଗଙ୍ଗଟେକ ହାଇଡ୍ରାଲ ପ୍ରୋଜେକ୍ଟ ଓ ଲେୟରେ ଲଟେୟାଡାହାଳୁଡ୍ରାଲ ପ୍ରୋଜେକ୍ଟ ବ୍ୟତୀତ ମାନଗାମ, ରିମ୍ବି, ରୋଠକ ଓ ସାଙ୍ଗ୍ ଖୋଲରେ ଅନ୍ୟ ଛୋଟିଛୋଟି ହାଇଡ୍ରାଲ ପ୍ରୋଜେକ୍ଟ ଅଛି ।

## ତାମିଲନାଡୁ

| | | |
|---|---|---|
| କ୍ଷେତ୍ରଫଳ | | ୧, ୩୦, ୦୬୯ ବର୍ଗକିଲୋମିଟର |
| ଜନସଂଖ୍ୟା | — | ୪୮, ୨୯୭, ୪୫୦ |
| ରାଜଧାନୀ | — | ମାଡ୍ରାସ |
| ଜିଲ୍ଲାସଂଖ୍ୟା | — | ୧୬ |
| ମୁଖ୍ୟ ଭାଷା | — | ତାମିଲ |

**ମୁଖ୍ୟ ସହର—**

କୁଡାଲୋର, ଡିଣ୍ଡିଗଲ, ଏରୋଡ, କାଞ୍ଚିପୁରମ, କୁମ୍ଭକୋନମ, ମାଡ୍ରାସ, ମଦୁରାଇ, ନଗର କୋୟଲ, ସାଲେମ, ସିଙ୍ଗାନାଲୁର, ଥାଞ୍ଜାଭର, ତ୍ରିଚିନାପଲ୍ଲୀ, ତିରୁନେଲ ଭେଲି, ତିରୁପୁର, ଟୁଟିକୋରିନ, ଭେଲୋର ।

**ଉଚ୍ଚ ନ୍ୟାୟାଳୟ**

ହାଇକୋର୍ଟ (ମାଡ୍ରାସ) ।

**ଅବସ୍ଥିତି—**

ଦକ୍ଷିଣ ଭାରତରେ ଅବସ୍ଥିତ । ଉତ୍ତର କର୍ଣ୍ଣାଟକ ଆନ୍ଧ୍ରପ୍ରଦେଶ, ପୂର୍ବ ଓ ଦକ୍ଷିଣରେ ଭାରତ ମହାସାଗର ଓ ପଶ୍ଚିମରେ କେରଳ ଅବସ୍ଥିତ ।

**ଇତିହାସ—**

୧୬୧୧ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ସର୍ବପ୍ରଥମେ ମାଡ୍ରାସ ରାଜ୍ୟରେ ପେଡ୍ଡା-ପାଲି (ବର୍ତ୍ତମାନ ନିଜାମ ପଟନମ୍)ରେ ବାଣିଜ୍ୟ କେନ୍ଦ୍ର ସ୍ଥାପନ କଲେ । ତାପରେ

ମାଘୁଲା ପଟନମ୍‌ରେ ଇଂରେଜମାନଙ୍କର ବାଣିଜ୍ୟ କେନ୍ଦ୍ର ସ୍ଥାପିତ ହେଲା । ୧୬୩୯ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ବର୍ତ୍ତମାନର ମାଡ୍ରାସରେ ବସତି ସ୍ଥାପନ କରିବା ପାଇଁ ଅନୁମତି ପାଇଥିଲେ ଓ ସେଣ୍ଟ ଜର୍ଜ ଦୁର୍ଗ ପ୍ରତିଷ୍ଠା କଲେ । ୧୮୦୧ ଖ୍ରୀଷ୍ଟାବ୍ଦ ସୁଦ୍ଧା ଇଂରେଜମାନେ ଉତ୍ତର ସରକାରରୁ କେପ୍‌କମୋରିନ ପର୍ଯ୍ୟନ୍ତ (କେତେକ ଫ୍ରେଞ୍ଚ ଓ ଡଚ ବସତି ବ୍ୟତୀତ) ସମସ୍ତ ଅଞ୍ଚଳ ଦଖଲ କରିଗଲେ ।

୧୯୫୬ ମସିହା ରାଜ୍ୟ ପୁନର୍ଗଠନ ଆକ୍ଟ ଅନୁସାରେ ମାଲବାର ଜିଲ୍ଲା (ଲାକା ଡାଇଭ ଓ ମିନିକୟଦ୍ୱୀପ ବ୍ୟତୀତ) । କାସାରାଗଡ ଜିଲ୍ଲା ତାଲୁକ, ଦକ୍ଷିଣ କାନାରାରୁ ନୂତନ ରାଜ୍ୟ କେରଳକୁ ଆସିଲା । ଦକ୍ଷିଣ କାନାରା ଜିଲ୍ଲା—(କାସରାଗୋଡ ତାଲୁକ ଓ ଆମିନଡିଭି ଦ୍ୱୀପ ବ୍ୟତୀତ) ଓ କୋଲେଗାଲ ତାଲୁକ ନୂତନ ରାଜ୍ୟ ମହୀଶୂରକୁ ଗଲା । ଲାକା ଡାଇଭ, ଆମିନ ଡଭି ଓ ମିନିକୟ ଦ୍ୱୀପ ଏକ ପୃଥକ ଅଞ୍ଚଳ ରୂପେ ରହିଲା । ତ୍ରିଭନ୍ଦ୍ରମ ଜିଲ୍ଲାର ଥରିଟି ତାଲୁକ, କୁଇଲନ ଜିଲ୍ଲାର ସେନ‌‌୍‌କୋଟା ତାଲୁକ, ଟାଭଙ୍କୋର କୋଚିନରୁ ନୂତନ ରାଜ୍ୟ ମାଡ୍ରାସକୁ ଗଲା । ୧୯୬୦ ଏପ୍ରିଲ ପହିଲାରେ ଅନ୍ଧ୍ରପ୍ରଦେଶର ଚିତୋର ଜିଲ୍ଲାରୁ ୧୦୪୯ ବର୍ଗ କିଲୋମିଟାର ଅଞ୍ଚଳ ମାଡ୍ରାସକୁ ଗଲା । ୧୯୬୮ ମସିହାରେ ଏହି ରାଜ୍ୟ ତାମିଲନାଡୁ ନାମରେ ନାମିତ ହେଲା ।

**କୃଷି—**

ମୋଟ ଋଷ ଜମିର ୪୭.୯ ପ୍ରତିଶତ ଭୂମି ଜଳସେଚିତ । ଧାନ, ମକ୍‌କା, ଜ, ବାଜରା, ଗଣି ଓ ଡାଲି ପ୍ରଧାନ ଖାଦ୍ୟ ଶସ୍ୟ । ଏହା ବ୍ୟତୀତ ଆଖୁ, ତୈଳବୀଜ, କପା, ଲଙ୍କା ମରିଚ, କଫି, ଚା ଓ ରବର ମଧ୍ୟ ଚାଷ କରଯାଏ । ରାଜ୍ୟର ୧୭ ପ୍ରତିଶତ ଅଞ୍ଚଳ ଜଙ୍ଗଲଦ୍ୱାରା ଆବୃତ ।

**ଶିଳ୍ପ—**

ଏ ରାଜ୍ୟରେ ଖଡ଼ପଥର, ମାଗ୍ନେସାଇଟ, ମାଇକା, କ୍ୱାର୍ଜ, ଫେଲ୍‌ସ ପାର, ଲୁଣ; ବକ୍‌ସାଇଟ, ଲିଗ୍‌ନାଇଟ ଓ ଜିପସମ, ଖଣିଜ ସମ୍ପଦ ଅଛି । ରାଜ୍ୟର ମୁଖ୍ୟ ଶିଳ୍ପ ହେଲା ଲୁଗା କଳ, ରସାୟନିକ ସାର କାରଖାନା, କାଗଜ ଓ କାଗଜ ଜାତ ଦ୍ରବ୍ୟ କାରଖାନା, ଛାପାଖାନା, ଡ଼ିଜେଲ ଇଞ୍ଜିନ, ଅଟୋମୋବାଇଲ ଓ ତାର ଅଂଶ ତିଆରି କାରଖାନା, ସିମେଣ୍ଟ କାରଖାନା, ଚିନିକଳ, ଲୁହା, ଇସ୍ପାତ; ରେଳଯ୍ୟାନ ଓ ଡବ୍‌ବା ତିଆରି କାରଖାନା ।

**ସେଚ—**

ଭବାନୀ, ଅମରାବତୀ; ଋରଗାଈ, ପଲମ ବିଁକୁଲମ ଆଲୟାର; କ୍ରୀଷ୍ଣାଗିରି, ସାଟାନର, ପୁଲମବାଡ଼ କଥାଲାଇ ହାଇଲେଭେଲ କେନାଲ, ଗୁରୁତ୍ୱପୂର୍ଣ୍ଣ ସେଚ ମାଧ୍ୟମ୍ୟ ।

**ଶକ୍ତି ଉତ୍ପାଦନ କେନ୍ଦ୍ର –**

ଏ ରାଜ୍ୟରେ ୧୮ ଟି ଜଳ ବିଦ୍ୟୁତ ଷ୍ଟେସନ ଓ ୪ଟି ଥର୍ମାଲ ଷ୍ଟେସନ ଅଛି । ଚିଙ୍ଗେଲ ପଟ୍ଟି ଜିଲ୍ଲାର କଲ୍ପ କାମରେ ଆଣବିକ ଶକ୍ତି ଷ୍ଟେସନ ନିର୍ମାଣ ଚାଲିଛି ।

**ଆଣ୍ଡାମାନ ଓ ନିକୋବର ଦ୍ୱୀପ (କେନ୍ଦ୍ର ଶାସିତ ଅଞ୍ଚଳ)**

| | | |
|---|---|---|
| କ୍ଷେତ୍ରଫଳ | — | ୮୨୯୩ ବର୍ଗ କିଲୋମିଟାର |
| ଜନସଂଖ୍ୟା | — | ୧୮୮, ୨୫୪ |
| ରାଜଧାନୀ | — | ପୋର୍ଟ ବ୍ଲେୟାର |
| ଜିଲ୍ଲା ସଂଖ୍ୟା | — | ୨ |
| ଉଚ୍ଚ ନ୍ୟାୟାଳୟ | — | କଲିକତାର ହାଇକୋର୍ଟ |
| ଅବସ୍ଥିତି | — | କଲିକତା ଠାରୁ ୧୨୫୫ |

କିଲୋମିଟାର ଓ ମାଡ୍ରାସଠାରୁ ୧୧.୯୦ କି ମି ଦୂରରେ ଆଣ୍ଡାମାନ ଦ୍ୱୀପ ବଙ୍ଗୋପ ସାଗର ମଧ୍ୟରେ ଅବସ୍ଥିତ । ଏହା ବର୍ମାର ନଗରାଏ ସ ଠାରୁ ୧୯୩ କି ମି. ଦୂର । ପାଞ୍ଚଟି ଦ୍ୱୀପର ସମଷ୍ଟିକୁ ବୃହତ ଅଣ୍ଡାମାନ କୁହାଯାଏ । ଦକ୍ଷିଣରେ ଥିବା ଦ୍ୱୀପକୁ କ୍ଷୁଦ୍ର ଅଣ୍ଡାମାନ କୁହାଯାଏ । ଏଥିରେ ୨୦୪ ଟି ଛୋଟ ଦ୍ୱୀପ ଅଛି । ଏଥି ମଧ୍ୟରୁ ପ୍ରଧାନ ଗ୍ରୁପ୍ ଦୁଇଟି ହେଲା ରିଚି ଆରଚି ପେଲମୋ ଓ ଲେବିରିନ୍ଥ ଦ୍ୱୀପପୁଞ୍ଜ । ଏହାର ମୋଟ କ୍ଷେତ୍ରଫଳ ୬୪୭୫ ବର୍ଗ କିଲୋମିଟାର । ବୃହତ ଆଣ୍ଡାମାନ ଗ୍ରୁପ୍‌ର ଦୈର୍ଘ୍ୟ ୪୬୬ କି ମି: ଓ ପ୍ରସ୍ଥ ୫୧ କି: ମି: ।

## ନିକୋବର ଦ୍ୱୀପପୁଞ୍ଜ

ଆଣ୍ଡାମାନ ଦ୍ୱୀପ ପୁଞ୍ଜର ଦକ୍ଷିଣରେ କ୍ଷୁଦ୍ର ଆଣ୍ଡାମାନଠାରୁ ୧୨୧ କି ମି. ଦୂରରେ ନିକୋବର ଦ୍ୱୀପପୁଞ୍ଜ ଅବସ୍ଥିତ । ଏହି ଦ୍ୱୀପ ପୁଞ୍ଜ ୧୯ଟି ଦ୍ୱୀପକୁ ନେଇ ଗଠିତ । ସେଥିମଧ୍ୟରୁ ୭ଟିରେ ଲୋକ ବାସ କରନ୍ତି ନାହିଁ । ଏ ଦ୍ୱୀପପୁଞ୍ଜର କ୍ଷେତ୍ର ଫଳ ୧୬୫୪ ବର୍ଗ କିଲୋମିଟାର । ଏହି ଦ୍ୱୀପପୁଞ୍ଜ ତିନିଟି ସବ୍ ଗ୍ରୁପ୍‌ରେ ବିଭକ୍ତ । (ଦକ୍ଷିଣ, ମଧ୍ୟ ଓ ଉତ୍ତର) । ଏ ତିନିଟି ଗ୍ରୁପ୍‌ର ମୁଖ୍ୟ ଦ୍ୱୀପ ହେଲା—ଗ୍ରେଟ୍ ନିକୋ-ବର, କାମୋର୍ତ୍ତା ଏବଂ ନାନକୋୱାରୀ କାରନିକୋବର, କାମୋର୍ତ୍ତା ଓ ନାନକୋୱାରୀ ମଧ୍ୟରେ ନାନକୋୱାରୀ ନାମରେ ସୁନ୍ଦର ବନ୍ଦର ଟିଏ ଅଛି ।

**ଇତିହାସ –**

୧୯୪୨ ମସିହା ମାର୍ଚ୍ଚ ୨୩ ତାରିଖ ଦିନ ଜାପାନୀ ସୈନ୍ୟ ଅଣ୍ଡାମାନ ଦ୍ୱୀପ-

ପୁଞ୍ଜ ଦଖଲ କରିଗଲେ । ୧୯୪୫ ମସିହା ଅକ୍ଟୋବର ୯ ତାରିଖରେ ଆଣ୍ଡାମାନରେ ଲୋକ-ଶାସନ ଆରମ୍ଭ ହେଲା । ୧୮୫୭ରୁ ୧୯୪୨ ମସିହା ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଏହି ଦ୍ୱୀପ ନିର୍ବାସନ ଦଣ୍ଡ ପାଇଥିବା ବ୍ୟକ୍ତିମାନଙ୍କର କାରାଗାର ରୂପେ ବ୍ୟବହୃତ ହେଲା । କିନ୍ତୁ ୧୯୪୫ ମସିହା ଅକ୍ଟୋବର ମାସରୁ ଏଠାରୁ ଉକ୍ତ କାରାଗାର ଉଠିଗଲା ।

୧୯୪୨ ମସିହା ଜୁଲାଇ ମାସରେ ଜାପାନୀ ସୈନ୍ୟ ନିକୋବର ଦ୍ୱୀପପୁଞ୍ଜ ଦଖଲ କରିଗଲେ । କାର ନିକୋବର ଜାପାନୀ ସୈନ୍ୟ କେତେକ ରାସ୍ତା ନିର୍ମାଣ କରିଥିଲେ । ୧୯୪୫ ମସିହା ଅକ୍ଟୋବର ମାସ ୯ ତାରିଖରେ ଇଂରେଜ ସୈନ୍ୟ ପୁଣି ଏ ଦ୍ୱୀପକୁ ଦଖଲକଲେ । ଭାରତର ରାଷ୍ଟ୍ରପତି ଜଣେ ଚିଫ୍ କମିଶନଙ୍କ ଜରିଆରେ ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜକୁ ଶାସନ କରନ୍ତି ।

**କୃଷି—**

ଧାନ, ନଡ଼ିଆ ଓ ଏରିକାନଟ ଏ ଦ୍ୱୀପପୁଞ୍ଜର ପ୍ରଧାନ ଫସଲ । ଏହା ବ୍ୟତୀତ ଆଳୁ, ଡାଲି, ଫଳ ଓ ପରିବା ମଧ୍ୟ ଏ ଦ୍ୱୀପରେ ଚାଷ କରଯାଏ । ରବର ଓ ପାନ ଚାଷ ମଧ୍ୟ ଆରମ୍ଭ ହୋଇଛି ।

**ଶିଳ୍ପ—**

ବାମ୍ବୋଫ୍ଲାଟ, ବମ୍ଫୁଲ ତଳା, ଲଙ୍ଗ ଦ୍ୱୀପ, ମାୟା ଓ ରଙ୍ଗାଟ ବୃହତ୍ତ ଶିଳ୍ପାନୁଷ୍ଠାନ ଗୁଡ଼ିକର କେନ୍ଦ୍ର । ଏହା ବ୍ୟତୀତ ମଧ୍ୟମ ଓ ଛୋଟ ଧରଣର ଶିଳ୍ପାନୁଷ୍ଠାନ ମଧ୍ୟ ଅଛି । ବୃହତ କାରଖାନାଗୁଡ଼ିକରେ—କାଠ ଗଡ ଚିର, ପ୍ଲାଇଉଡ୍ ତିଆରି ପ୍ରଭୃତି ତିଆରି ହୁଏ ।

## ଅରୁଣାଞ୍ଚଳ ପ୍ରଦେଶ

| | | |
|---|---|---|
| କ୍ଷେତ୍ରଫଳ | — | ୮୩, ୫୭୮ ବର୍ଗ କିଲୋମିଟର |
| ଜନସଂଖ୍ୟା | — | ୭୨୮, ୦୫୦ |
| ରାଜଧାନୀ | — | ଇଟାନଗର |
| ଜିଲ୍ଲାସଂଖ୍ୟା | — | ୫ |
| ଉଚ୍ଚନ୍ୟାୟାଳୟ | — | ହାଇକୋର୍ଟ (ଗୌହାଟୀ) |

**ଇତିହାସ—**

ଆସାମର ପୂର୍ବତନ ଉତ୍ତର ପୂର୍ବ ସୀମାନ୍ତ ଅଞ୍ଚଳ ୧୯୭୨ ମସିହା ଜାନୁୟାରି ୨୧ ତାରିଖରେ ଏକ କେନ୍ଦ୍ର ଶାସିତ ରାଜ୍ୟରୂପେ ଘୋଷିତ ହେଲା । କାମେଙ୍ଗ, ତିରପ, ସୁବନଶିରି, ସିଆଙ୍ଗ ଓ ଲୋହିତ ସୀମାନ୍ତ ଡିଭିଜନକୁ ନେଇ ଏ ରାଜ୍ୟ ଗଠିତ ।

**କୃଷି—**

ଏ ରାଜ୍ୟର ୪୬ ପ୍ରତିଶତ ବ୍ୟକ୍ତିଙ୍କର ପ୍ରଧାନ ଜୀବିକା କୃଷି । ମୋଟ ଚାଷ ଜମିର ୧୭ ପ୍ରତିଶତ ଭୂମିରେ ଜଳସେଚନ ସୁବିଧା ରହିଛି । ଧାନ, ମକ୍କା, ମିଲେଟ, ଗହମ ଓ ସୋରିଷ ପ୍ରଧାନ ଫସଲ । ଏ ରାଜ୍ୟର ୭୩ ପ୍ରତିଶତ ଅଞ୍ଚଳ ଜଙ୍ଗଲରେ ପରିପୂର୍ଣ୍ଣ ।

**ଶିଳ୍ପ—**

ଜଙ୍ଗଲଜାତ ଦ୍ରବ୍ୟ ଏ ରାଜ୍ୟର ପ୍ରଧାନ ଶିଳ୍ପ । ଏହା ବ୍ୟତୀତ ଲୁଗାବୁଣା ଓ ଅନ୍ୟଶିଳ୍ପ ଯଥା—କରତ କଳ, ପ୍ଲାଇଉଡ କାରଖାନା, ଧାନକଳ, ଫଳ ସଂରକ୍ଷଣ ୟୁନିଟ ଓ ତୈଳ ବହିଷ୍କାର ମଧ୍ୟ ଏ ରାଜ୍ୟର ମଧ୍ୟମ ଓ ଛୋଟ ଧରଣର ଶିଳ୍ପ ।

**ଶକ୍ତି ପ୍ରୋଜେକ୍ଟ—**

ରହଙ୍ଗ, ପାଯାଘାଟ, ବଯରରେ ହାଇଡାଲ ପ୍ରୋଜେକ୍ଟ, ଅଲଙ୍ଗ ଦେଢ, ବିରଟଙ୍ଗରେ ପାୱାର ପ୍ରୋଜେକ୍ଟ, ଟାୱାଙ୍ଗ, ଜିରୋ, ତେଜୁ, ଡରଙ୍ଗ ଓ ସିଙ୍ଗର ହାଇଡାଲ ପ୍ରୋଜେକ୍ଟ ।

## ଚଣ୍ଡୀଗଡ଼

| | | |
|---|---|---|
| କ୍ଷେତ୍ରଫଳ | — | ୧୧୪ ବର୍ଗ କିଲୋ |
| ଜନସଂଖ୍ୟା | — | ୪୫୦, ୦୬୧ ମିଟର |
| ରାଜଧାନୀ | — | ଚଣ୍ଡୀଗଡ଼, |

**ଉଚ୍ଚ ନ୍ୟାୟାଳୟ—**

ଚଣ୍ଡୀଗଡରେ ପଞ୍ଜାବ ଓ ହରିୟାନାର ହାଇକୋର୍ଟ ।

**ଇତିହାସ—**

୧୯୬୬ ମସିହା ନଭେମ୍ବର ୧ ତାରିଖରେ ଚଣ୍ଡୀଗଡ କେନ୍ଦ୍ର ଶାସିତ ଅଞ୍ଚଳ ହେଲା । ଏହା ପଞ୍ଜାବ ଓ ହରିୟାନାର ସଂଯୁକ୍ତ ରାଜଧାନୀ ।

**କୃଷି —**

ସମସ୍ତ ଚାଷଜମିର ୪୨ ପ୍ରତିଶତ ଭୂମିରେ ଜଳସେଚନ ସୁବିଧା ଅଛି । ଗହମ, ମକ୍କା ଓ ବିଲାତି ଆଳୁ ପ୍ରଧାନ ଫସଲରେ ପରିପୂର୍ଣ୍ଣ ।

**ଶିଳ୍ପ—**

ପଶମ ଟପ୍, ସୂତା, ପୋଷାକ, ଛୁଞ୍ଚି, ଇଲେକ୍ଟ୍ରିକ ମିଟର, ରନ୍ଧନ ଅଣ୍ଟି-

ବାୟୋଟିକ୍ସ, ଔଷଧ, ବାଇସାଇକେଲ ବିମ୍ ସରଞ୍ଜାମ ଚେନ, ଫ୍ରିହୁଇଲ, କାର୍ଡ-ବୋର୍ଡ, ଇସ୍ପାତ ଫର୍ଣ୍ଣିଚର କାରଖାନା ଏରାଜ୍ୟର ମୁଖ୍ୟ ଶିଳ୍ପ । ଏହା ବ୍ୟତୀତ ଲୁହା ଓ ଇସ୍ପାତ ରିରୋଲିଙ୍ଗ, ସାନିଟାରିଂ ଫିଟିଙ୍ଗ୍ସ, ଦ୍ୱାର ଖଞ୍ଜିବା, ଇଲେକଟ୍ରନିକ ଯନ୍ତ୍ରପାତି, ବାସନ, ମେସିନ ସ୍କ୍ରୁ ବିଦ୍ୟୁତ ଉପକରଣ, ପ୍ଲାଷ୍ଟିକ ଜୋତା, ଚିକିତ୍ସା ବିଭାଗୀୟ ତୁଳା, ମେସିନ ପାର୍ଟସ, ପେଣ୍ଟ ଓ ବାର୍ନିସ, ପାଇପ୍, ପାଇପ, ପୋକମରା, ଔଷଧ, ଅଟୋ କ୍ୟାବଲସ ଓ ଘରୋଇ କ୍ୟାବଲ, ଥର୍ମାମିଟାର, ସାବୁନ, ରସାୟନ ସିମେଣ୍ଟ ପାଇପ, ଟେପ୍‌ରେକର୍ଡର, ଟ୍ରାକ୍ଟର ପାର୍ଟସ, କାଲକୁଲେଟର; ରେଜର୍ ସ୍ପେୟାର୍ସ, ହାତବୁଣା ଲୁଗା, ଜୋତା, ସିଲାଇ ମେସିନ, ଏ ରାଜ୍ୟର କୁଟୀର ଶିଳ୍ପ ।

## ଦାଦ୍ରା ଓ ନଗର ହାବେଳି

| | | |
|---|---|---|
| କ୍ଷେତ୍ରଫଳ | — | ୪୯୧ ବର୍ଗ ମାଇଲ |
| ଜନସଂଖ୍ୟା | — | ୧୦୩ ୬୭୭ |
| ରାଜଧାନୀ | — | ସିଲି ଭସା |
| ଉଚ୍ଚ ନ୍ୟାୟାଳୟ | — | ହାଇକୋର୍ଟ — ବମ୍ବେ |

**ଇତିହାସ—**

ସମ୍ବିଧାନର ୧୦ ମ ସଂଶୋଧନ ଅନୁଯାୟୀ ପର୍ତ୍ତୁଗୀଜ ଉପନିବେଶ ଦାଦ୍ରା ଓ ନଗର ହାବେଳି ୧୯୬୧ ମସିହା ଅଗଷ୍ଟ ୧୧ ତାରିଖରେ କେନ୍ଦ୍ର ଶାସିତ ରାଜ୍ୟରୂପେ ଘୋଷିତ ହେଲା ।

**କୃଷି—**

ମୋଟ ଜନସଂଖ୍ୟାର ୮୮ ପ୍ରତିଶତ ଆଦିବାସୀ । କୃଷି ଏମାନଙ୍କର ପ୍ରଧାନ ଜୀବିକା । ଧାନ, ରଷୀ, ଗହମ ଏ ରାଜ୍ୟର ମୁଖ୍ୟ ଫସଲ । ଏ ରାଜ୍ୟର ୪୧.୫ ପ୍ରତିଶତ ଭୂମି ଜଙ୍ଗଲରେ ପରିପୂର୍ଣ୍ଣ ।

**ଶିଳ୍ପ—**

ଦାଦ୍ରା ଓ ନଗର ହାବେଳୀରେ କୌଣସି ବୃହତ ଶିଳ୍ପ ନାହିଁ । ମଧ୍ୟମ ଧରଣର ଶିଳ୍ପାନୁଷ୍ଠାନଗୁଡ଼ିକରେ ଅଟୋମୋବାଇଲ ପାର୍ଟସ, ଚଷମା ଫ୍ରେମ, ତୁଳା ଓ ଆର୍ଟସିଲ୍କ କନା ଓ ପୋଷାକ । ନାୟଲନ ଫିଲମେଲକ୍ସେସ, ଫୋମ୍ ଜାତ ଜିନିଷ, ସାବୁନ, ବିସ୍କୁଟ ମହମବତୀ, ଫଳରସ ଓ ଘିଅ ପ୍ରଭୃତି ତିଆରି ହୁଏ ।

**ସେଚ—**

କୌଣସି ବଡ କିମ୍ବା ମଧ୍ୟମ ଧରଣର ସେଚ ସ୍କିମ୍ ନାହିଁ । କୃଷି ବର୍ଷା ଉପରେ ନିର୍ଭର କରେ ।

**ଶକ୍ତି—**

ଗୁଜରାଟରୁ ଶକ୍ତି କ୍ରୟ କରାଯାଏ ।

# କର୍ଣ୍ଣାଟକ

| | | |
|---|---|---|
| କ୍ଷେତ୍ରଫଳ | — | ୧,୯୧, ୭୭୩ ବର୍ଗ କିଲୋମିଟର |
| ଲୋକ ସଂଖ୍ୟା | — | ୩୭୦୪୩ ୪୫୧ |
| ରାଜଧାନୀ | — | ବାଙ୍ଗାଲୋର |
| ଜିଲ୍ଲା | — | ୧୯ |
| ମୁଖ୍ୟଭାଷା | — | କାନ୍ନାଡା |

**ମୁଖ୍ୟ ସହର—**

ବାଙ୍ଗାଲୋର, ବେଲଗାମ୍ ବେଲ୍ଲରୀ, ଭଦ୍ରାବତୀ, ବିଜାପୁର, ଦେବନାଗେରେ, ଗୁଲବର୍ଗା, ହୁବଲୀ, ମାଙ୍ଗାଲୋର, ମହୀଶୂର, ଶିମୋଗା ।

**ଉଚ୍ଚନ୍ୟାୟାଳୟ**

ହାଇକୋର୍ଟ (ବାଙ୍ଗାଲୋର)

**ଅବସ୍ଥିତି—**

ଦକ୍ଷିଣ ଭାରତରେ ଅବସ୍ଥିତ । ଉତ୍ତରରେ ମହାରାଷ୍ଟ୍ର, ପୂର୍ବରେ ଆନ୍ଧ୍ର ପ୍ରଦେଶ, ଦକ୍ଷିଣରେ ତାମିଲନାଡୁ ଏବଂ କେରଳ । ପଶ୍ଚିମରେ ଭାରତ ମହାସାଗର ଓ ଉତ୍ତର ପଶ୍ଚିମରେ ଗୋଆ ।

**ଇତିହାସ—**

୧୯୫୬ ମସିହାର ରାଜ୍ୟ ପୁନର୍ଗଠନ ଅକ୍ତ ଅନୁସାର କାନ୍ନାଡା ଭାଷା ଅଞ୍ଚଳକୁ ନେଇ କର୍ଣାଟକ ରାଜ୍ୟ ଗଠିତ ହେଲା । ଏଥିରେ ଥିବା ଜିଲ୍ଲା ଗୁଡକ ହେଲା – ମହୀଶୂର, କୁର୍ଗ, ବିଜାପୁର, କାନାରା, ଧାରଓ୍ୱାର, ବେଲଗମ, ପୂର୍ବତନ ବମ୍ବେ, ଗୁଲବର୍ଗା, ରାୟଚୁର, ବିଦର, ଦକ୍ଷିଣ କାନାରା, କୋଲେଗାଲ । ୧୯୭୩ ମସିହାରେ ଏହାର ନାମ କର୍ଣାଟକ ହେଲା । ପୂର୍ବରୁ ଏହାର ନାମ ଥିଲା ମହୀଶୂର ।

**କୃଷି—**

ସମଗ୍ର ଚାଷ ଜମିର ୫୦ର ପ୍ରତିଶତ ଜଳ ସେଚିତ । ଧାନ, ରାଗୀ, ଜ, ଗହମ, ଡାଲି ପ୍ରଧାନ ଖାଦ୍ୟଶସ୍ୟ । ଏହା ବ୍ୟତୀତ ଆଖୁ କପା, ତୈଳବୀଜ, ତମାଖୁ, ମସଲା, ଏରିକାନଟ, କଫି, କାଜୁ ବାଦାମ, ଅଳେଇଚ ଲଙ୍କାମରିଚ, କମଳା ଲେମ୍ବୁ ଓ ଅଙ୍ଗୁର ବହୁଳ ଭାବରେ ଚାଷ କରଯାଏ । ରାଜ୍ୟର ୧୫.୨ ପ୍ରତିଶତ ଅଞ୍ଚଳ ଅରଣ୍ୟଦ୍ୱାରା ଆଚ୍ଛାଦିତ ।

**ଶିଳ୍ପ—**

କର୍ଣାଟକ ଖଣିଜ ସମ୍ପଦ ଦ୍ୱାରା ସମୃଦ୍ଧ । ଉତ୍କୃଷ୍ଟ ଲୁହାପଥର, ତମ୍ବା, ମାଙ୍ଗାନିଜ

କ୍ରୋମାଇଟ୍, ଚୀନାମାଟି ପ୍ରଧାନ ଖଣିଜ ସମ୍ପଦ । କର୍ଣ୍ଣାଟକ କେବଳ ଏକମାତ୍ର ରାଜ୍ୟ ଯେଉଁଠାରେ ସୁନା ଖଣି କାମ ଚାଲିଛି । ବୃହତ ଶିଳ୍ପଗୁଡ଼ିକ—କଳକବ୍ଜା, ବିମାନ, ଇଲେକ୍ଟ୍ରନିକ୍ ଦ୍ରବ୍ୟ, ଘଣ୍ଟା ଓ ଟେଲି କମୁନିକେଶନ ଯନ୍ତ୍ରପାତି ଉତ୍ପାଦନ କରନ୍ତି । କର୍ଣ୍ଣାଟକର ଅନ୍ୟ ବିକାଶଶୀଳ ଶିଳ୍ପଗୁଡ଼ିକ ହେଲା ଲୁଗାକଳ, ଚିନିକଳ, ସାବୁନ, ରାସାୟନିକ ଓ ଔଷଧପତ୍ର ଏବଂ ଚିକିତ୍ସା ସମ୍ବନ୍ଧୀୟ ଯନ୍ତ୍ରପାତି ତିଆରି କାରଖାନା, ସାର, କାଗଜ, ସିମେଣ୍ଟ, କାଚ, ସେରମିକ, ପୋର୍ସେଲେନ ଓ ବିଦ୍ୟୁତ ଉପକରଣ ତିଆରି କାରଖାନା ।

**ସେଚ**

କ୍ରିଷ୍ଣାର କାବେରୀ ନଦୀର ଦୁଇଟି ବୃହତ ଜଳଭଣ୍ଡାର ବ୍ୟତୀତ କର୍ଣ୍ଣାଟକର ଅନ୍ୟ ବହୁ ନଦୀ ସେଚ ଓ ଶକ୍ତି ଉତ୍ପାଦନରେ ସାହାଯ୍ୟ କରନ୍ତି । ତୁଙ୍ଗଭଦ୍ରା, ଘାଟପ୍ରଭା, ମାଲାପ୍ରଭା. ଅପର କ୍ରିଷ୍ଣା; ଭଦ୍ରା, ହାରଙ୍ଗୀ, କବିନୀ, ହେମବତୀ, ଓ ବେନିତଆରା ପ୍ରୋଜେକ୍ଟ ସେଚର ମୁଖ୍ୟ ମାଧ୍ୟମ ।

**ଶକ୍ତି ଉତ୍ପାଦନ କେନ୍ଦ୍ର**

ମୁଖ୍ୟ ଶକ୍ତି ଉତ୍ପାଦନ କେନ୍ଦ୍ରଗୁଡ଼ିକ ହେଲା—ସାରବତୀ ଜଳ ବିଦ୍ୟୁତ ପ୍ରୋଜେକ୍ଟ, ଶିବ ସମୁଦ୍ରମ୍ ଜଳ ବିଦ୍ୟୁତ ପ୍ରୋଜେକ୍ଟ, ଓ କାଳୀ ନଦୀ ଜଳ ବିଦ୍ୟୁତ ପ୍ରୋଜେକ୍ଟ ।

## କେରଳ

| | | |
|---|---|---|
| କ୍ଷେତ୍ରଫଳ | — | ୩୮, ୮୬୪ ବର୍ଗ କିଲୋମିଟାର |
| ଜନସଂଖ୍ୟା | — | ୨୫, ୪୦୩, ୨୧୭ |
| ରାଜଧାନୀ | — | ତ୍ରିବେନ୍ଦ୍ରମ |
| ଜିଲ୍ଲା | — | ୧୩ |
| ମୁଖ୍ୟ ଭାଷା | — | ମାଲୟାଲମ |
| ଉଚ୍ଚ ନ୍ୟାୟାଳୟ | — | ହାଇକୋର୍ଟ (ଏର୍ଣ୍ଣାକୁଲମ) |

**ଅବସ୍ଥିତି**

ଦକ୍ଷିଣ ଭାରତରେ ଅବସ୍ଥିତ । ଉତ୍ତରରେ କର୍ଣ୍ଣାଟକ, ପୂର୍ବ ଓ ଦକ୍ଷିଣ ପୂର୍ବରେ ତାମିଲନାଡୁ ଦକ୍ଷିଣ ପଶ୍ଚିମ ଓ ପଶ୍ଚିମରେ ଭାରତ ମହାସାଗର ।

**ଇତିହାସ**

୧୯୫୬ ମସିହା ରାଜ୍ୟ ପୁନର୍ଗଠନ ଆକ୍ଟ ଅନୁସାରେ କେରଳ—ପୂର୍ବତନ ରାଜ୍ୟ ଟ୍ରାଭଙ୍କୋର କୋଚିନ (ତ୍ରିବେନ୍ଦ୍ରମ ଜିଲ୍ଲାର ଚାରିଟି ତାଲୁକ ଓ କୁଇଲନ ଜିଲ୍ଲାର ସେନ-କୋଟା ତାଲୁକର କେତେକ ଅଂଶ ବ୍ୟତୀତ)କୁ ନେଇ ଗଠିତ । ମାଡ୍ରାସର ମାଲବାର ଜିଲ୍ଲା ଓ ଦକ୍ଷିଣ କାନାଡ଼ାର କାସର ଗଡ ଅଞ୍ଚଳ ମଧ୍ୟ କେରଳରେ ମିଶିଲା ।

**କୃଷି**

ମୋଟ ଗ୍ରଷ ଜମିର ୧୨ ୨୦ ପ୍ରତିଶତ ଅଞ୍ଚଳ ଜଳସେଚିତ । କାଜୁ ବାଦାମ ଏରିକା ନଟ, ନଡ଼ିଆ, ତୁଳା, ତୈଳବୀଜ, ଲଙ୍କାମରିଚ, ଅଖୁ, ରବର, କଫି, ଚା' ଅଦା, ଓ ଅଳଇଚ ପ୍ରଧାନ କୃଷିଜାତ ଦ୍ରବ୍ୟ । ଧାନ ପ୍ରଧାନ ଖାଦ୍ୟ ଶସ୍ୟ । ଏ ରାଜ୍ୟର ୨୨.୮୩ ପ୍ରତିଶତ ଅଞ୍ଚଳ ଜଙ୍ଗଲଦ୍ୱାରା ଆଚ୍ଛାଦିତ ।

**ଶିଳ୍ପ**

ଇଲମେନାଇଟ, ରୁଟାଇଲ, ମୋନାଜାଇଟ, ଜିରକନ, ସିଲିମାନାଇଟ, ମାଟି, ବାଲି, ଚୂନ ପ୍ରଧାନ ଖଣିଜ; ନଡ଼ିଆ କତା, କାଜୁବାଦାମ, ରବର, ଚା, ସେରମିକ, ବିଦ୍ୟୁତ ଓ ଇଲେକଟ୍ରନିକ ଉପକରଣ, ଟେଲିଫୋନ କ୍ୟାବଲ୍ ଟ୍ରାନ୍ସ ଫର୍ମର୍ ଇଟା ଏବଂ ଟାଇଲ ଔଷଧ ଓ ରସାୟନ, ଜେନେରଲ ଇଂଜିନିୟରିଙ୍ଗ୍ସ,'ପ୍ଲାଇ ଉଡ୍ ସ୍ପ୍ଲିଣ୍ଟସ, ଭିନିୟର୍ସ, ବିଡ଼ି ଓ ସିଗାର, ସାବୁନ, ତେଲ, ସାର କାରଖାନା କେରଳରେ ଅଛି । ନୂତନ ସ୍ଥାପିତ କାରଖାନାଗୁଡ଼ିକରେ କଳକବ୍‌ଜା, ପେଟ୍ରୋଲିୟମ ଓ ପେଟ୍ରୋଲିୟମ ଜାତ ଦ୍ରବ୍ୟ, ପେଣ୍ଟସ, ଆଲୁମିନିୟମ, କମ୍ୟୁନିକେଶନ କ୍ୟାବଲ ରବର, ରେୟନ, ପଲପ୍, କାଗଜ, ସ୍କୁଟର କାଚ ପ୍ରଭୃତି ନିର୍ମିତ ହୁଏ ।

**ସେଚ**

ମଲମ୍ପୁଜ୍ଜା, ପିରି, ମାଲାମ ପୁଝା, ନେୟାର, ପୋଥୁଣ୍ଡି, ଗାୟତ୍ରୀ, ଓ୍ୱାଲୟାର, ଭଝାନି ମଙ୍ଗଲମ ଏବଂ ଚିରକୁଝି ମୁଖ୍ୟ ସେଚ ପ୍ରୋଜେକ୍ଟ । ଅନ୍ୟ ସେଚ ପ୍ରୋଜେକ୍ଟ ଗୁଡ଼ିକ ହେଲା - କାଲଡା, ପାମ୍ବା, ପେରିୟାର ଉପତ୍ୟକା; ଚିତୁର ପୁଝା, କାଞ୍ଜିରମ ପୁଝା, କୁଟ୍ଟିଆଡ଼ି, ପାଝାସୀ, ମୁଭଟ୍ଟୁ ପୁଝା; ଚିମନୀ ଅଟ୍ଟାପାଡ଼ି, କାରାପୁଝା,ମାନାଚିଲ ଓ ଇଡ଼ାମାଲୟାର ।

**ଶକ୍ତି ଉତ୍ପାଦନ କେନ୍ଦ୍ର**

ପାଲିଭସାଲ, ସେନଗୁଲମ, ନେରିୟାମଙ୍ଗଲମ, ପାନିୟାର, ପେରିଙ୍ଗଲ କୁଥୁ, ସୋଳୟାର, ସାବରି ଗିରି, କୁଟିୟାଡ଼ି ଓ ଇଡୁକୀ ।

## ମଧ୍ୟ ପ୍ରଦେଶ

| | | |
|---|---|---|
| କ୍ଷେତ୍ରଫଳ | — | ୪,୩୨, ୮୪୧ ବର୍ଗ କିଲୋ ମିଟାର |
| ଜନସଂଖ୍ୟା | — | ୫୨, ୧୩୧, ୭୧୭ |
| ରାଜଧାନୀ | — | ଭୋପାଳ |
| ଜିଲ୍ଲା | — | ୪୫ |
| ମୁଖ୍ୟ ଭାଷା | — | ହିନ୍ଦୀ |

**ମୁଖ୍ୟ ସହର**

ଭିଲାଇ, ଭୋପାଳ, ବିଳାସପୁର, ଗ୍ୱାଲିୟର; ଇନ୍ଦୋର, ଜବଲପୁର; ରାୟପୁର, ରତଲାମ, ସାଗର ଏବଂ ଉଜ୍ଜୟିନୀ ।

**ଉଚ୍ଚନ୍ୟାୟାଳୟ**

ହାଇକୋର୍ଟ—ଜବଲପୁର

**ଅବସ୍ଥିତି**

ମଧ୍ୟ ଭାରତରେ ଅବସ୍ଥିତ । ଉତ୍ତରରେ ରାଜସ୍ଥାନ, ଉତ୍ତରପ୍ରଦେଶ, ପୂର୍ବରେ ବିହାର ଓ ଓଡ଼ିଶା, ଦକ୍ଷିଣରେ ଆନ୍ଧ୍ରପ୍ରଦେଶ ଏବଂ ମହାରାଷ୍ଟ୍ର, ପଶ୍ଚିମରେ ଗୁଜରାଟ ।

**ଇତିହାସ**

୧୯୫୬ ମସିହାର ରାଜ୍ୟ ପୁନର୍ଗଠନ ଆଇନ ଅନୁସାରେ ୧୯୫୬ ମସିହା ନଭେମ୍ବର ୧ ତାରିଖରେ ମଧ୍ୟପ୍ରଦେଶ ଗଠିତ ମଧ୍ୟପ୍ରଦେଶରେ ୧୭ଟି ହିନ୍ଦୀଭାଷୀ ଜିଲ୍ଲା । ପୂର୍ବତନ ହେଲା । ଏହା ପୂର୍ବତନ ମଧ୍ୟ ଭାରତ (ମାନ୍ଦାସର ଜିଲ୍ଲାର ସୁନେଲ ବ୍ୟତୀତ) ପୂର୍ବତନ ଭୋପାଳ ଓ ବିନ୍ଧ୍ୟପ୍ରଦେଶ ଓ କୋଟା ଜିଲ୍ଲାର ସିରୋଂଜ ସବ୍‌ଡିଭିଜନକୁ ନେଇ ଗଠିତ ।

**କୃଷି**

ରାଜ୍ୟର ୪୬ ପ୍ରତିଶତ ଭୂମି ଚାଷଯୋଗ୍ୟ । ଏଥି ମଧ୍ୟରୁ ୧୧.୪ ପ୍ରତିଶତ ଭୂମି ଜଳସେଚିତ । ଜ, ଗହମ, ଧାନ ଏବଂ ଡାଲି ପ୍ରଧାନ ଶସ୍ୟ । ଏହା ବ୍ୟତୀତ ତୈଳବୀଜ କପା ଓ ଆଖୁ ପ୍ରଧାନ ଚାଷ । ରାଜ୍ୟର ୩୦ ପ୍ରତିଶତ ଅଞ୍ଚଳ ଜଙ୍ଗଲରେ ପୂର୍ଣ୍ଣ ।

**ଶିଳ୍ପ**

କୋଇଲା, ଲୁହାପଥର, ଚୂନ ପଥର, ଡୋଲୋମାଇଟ, ବକସାଇଟ, ତମ୍ବା, ଫସଫରାଇଟ, ଫେଲ୍‌ସପାର, ଆସ୍‌ବେଷ୍ଟସ, ହୀରା ଓ ମାଙ୍ଗାନିଜ ପ୍ରଧାନ ଖଣିଜ । ପ୍ରଧାନ ଶିଳ୍ପ କେନ୍ଦ୍ରଗୁଡ଼ିକ ହେଲା—ଭିଲାଇର ଷ୍ଟିଲ ପ୍ଲାଣ୍ଟ, ଭୋପାଳର ଭାରତ ହେଭି ଇଲେକ୍‌ଟ୍ରିକାଲ୍‌ସ, କୋରବାର ଆଲୁମିନିୟମ ପ୍ଲାଣ୍ଟ, ହୋସାଙ୍ଗାବାଦର ସିକ୍ୟୁରିଟି କାଗଜକଳ, ଦେଓ୍ୱାସର ମୁଦ୍ରା ଓ ନୋଟ ତିଆରି କାରଖାନା ନେପାନଗରର ନିଉଜ ପ୍ରିଣ୍ଟ ମିଲ, ଅମଲାଇର ଓରିଏଣ୍ଟ ପେପର ମିଲ, ନିମୁଚର ଆଲକାଲଏଡ୍ ଫ୍ୟାକ୍‌ଟରୀ, ସିମେଣ୍ଟ କାରଖାନା (କାଇମୋର, ଜାମୁଲ,ବାନମୋର,ସାତ୍ନା, ଟାଇଡା) ଓ ମାନଧର ଜବଲପୁରର—ଯାନ ନିର୍ମାଣ କାରଖାନା; ଅସ୍ତ୍ରଶସ୍ତ୍ର ତିଆରି କାରଖାନା; ଗନକ୍ୟାରେଜ ଫ୍ୟାକ୍‌ଟରୀ, ଡାକ ଓ ତାର ବିଭାଗ କାରଖାନା । ଏ ରାଜ୍ୟରେ ୨୩ଟି ଲୁଗା କଳ ଅଛି । ପାତ୍ର ନିର୍ମାଣ, ଚିନିକଳ, ଷ୍ଟ୍ରବୋର୍ଡ ମିଲ୍‌ସ, ରିଫ୍ରାକଟରିସ, ଟେକ୍‌ସଟାଇଲ କଳକବ୍‌ଜା, ଷ୍ଟିଲ କାଷ୍ଟିଙ୍ଗ, ରିରୋଲିଙ୍ଗ, ଇଣ୍ଡଷ୍ଟ୍ରିୟାଲ ଗ୍ୟାସ, ସିନ୍ଥେଟିକ୍‌ସ ଏବଂ ଡ୍ରଗ୍, ବିସ୍କୁଟ କାରଖାନା, ଇଂଜିନିୟରିଂ କଳକବ୍‌ଜା, ମିନି ଇସ୍ପାତ କାରଖାନା, ରସାୟନିକ ସାର, ରେୟନ କାରଖାନା ମଧ୍ୟପ୍ରଦେଶର ଅନ୍ୟ ଶିଳ୍ପ ।

### ସେଚ

ଚମ୍ବଲ; ଟାଓ୍ବା; ବାରନା, ହସଦେଓ ଆର୍-ବି-ସି, ମହାନଦୀ ଜଳଭଣ୍ଡାର ବାରଗୀ, ନର୍ମଦା ସାଗର; ବାଂଶଗଡ଼, ହସଦେଓ ବାଙ୍ଗୋ, ଅପରୱେନ ଗଙ୍ଗା, ମାଡ଼-ଜେଡା ପ୍ରଧାନ ସେଚ ମାଧ୍ୟମ । ଏହା ବ୍ୟତୀତ ବହୁ ମଧ୍ୟମ ଓ ଛୋଟ ଧରଣର ସେଚ ବ୍ୟବସ୍ଥା ଅଛି ।

### ଶକ୍ତି କେନ୍ଦ୍ର

ମଧ୍ୟ ପ୍ରଦେଶ ପ୍ରଚୁର ଜଳ ବିଦ୍ୟୁତ ଶକ୍ତି ଉତ୍ପାଦନ କରେ । ସାରନୀ ପାୱାର ହାଉସ ୬୦୦ ମେଗାଓ୍ୟାଟ ବିଦ୍ୟୁତ ଶକ୍ତି ଯୋଗାଇ ଦିଏ ।

### ପୃଥିବୀର ବୃହତ୍ତମ ଘଡ଼ି

ପୃଥିବୀର ବୃହତ୍ତମ ଘଡ଼ ଲଣ୍ଡନ ସହରର ଏକ ସ୍ତମ୍ଭ ଉପରେ ସ୍ଥାପିତ ହୋଇଅଛି । ଏହାର ନାମ ବିଗବେନ । ଏହି ଘଡ଼ିଟିର ଓଜନ ପ୍ରଥମେ ଥିଲା ୧୬ ଟନ୍ । ଏହାକୁ ଉପରକୁ ଉଠାଇବାରେ ଅସୁବିଧା ହେବାରୁ ଏହାକୁ ଭାଙ୍ଗି ୧୩ ଟନ୍ ଓଜନର ରଖାଗଲା । ୧୮୫୯ ମସିହା ମେ'ମାସ ୩୧ ତାରିଖରୁ ଏ ଘଡ଼ିଟି ସ୍ତମ୍ଭରେ ରହି କାମକଲା । ପ୍ରତି ଡାଏଲ୍ର ପରିଧି ୨୩ ଫୁଟ୍, ଘଡ଼ିଟିର କଣ୍ଟାଗୁଡ଼ିକର ଲମ୍ବ ୧୪ ଫୁଟ ଏବଂ ସେଗୁଡ଼ିକ ତମ୍ବାରେ ତିଆରି, କଣ୍ଟାଗୁଡ଼ିକର ଓଜନ ୧୦୦ କି:ଗ୍ରା: ରୁ କମ୍ ନୁହେଁ । ଏହାର ସୁରକ୍ଷା ପାଇଁ ୧୪ ଜଣ କର୍ମଚାରୀ ନିଯୁକ୍ତ ଅଛନ୍ତି ।

### ଆଶ୍ଚର୍ଯ୍ୟ କିନ୍ତୁ ସତ

ଆମ୍ଭେମାନେ ସବୁବେଳେ ତିନି ପ୍ରକାର ମଣିଷ ଦେଖୁଥାଉଁ, ପୁରୁଷ, ସ୍ତ୍ରୀ ଓ ମାଇଚିଆ କିନ୍ତୁ ଏ ଯୁଗରେ ଉଭୟଲିଙ୍ଗି ମନୁଷ୍ୟ ଦେଖାଯାଇଛି । ଗୋଟିଏ ପିଲା ଜନ୍ମ ହୋଇଛି ତାର ଉଭୟଲିଙ୍ଗ ରହିଛି । ସ୍ତ୍ରୀ ଲିଙ୍ଗ ତଳେ ଓ ତା ଉପରକୁ ପୁଲିଙ୍ଗ । ମାତ୍ର ତାର ଅଣ୍ଡକୋଷ ନାହିଁ । ଲିଙ୍ଗ ସାହାଯ୍ୟରେ ସେ ପରିସ୍ରା କରୁଛି । ଏହି ୬୦ ଦିନର ପିଲାଟି ମୟୂରଭଞ୍ଜ ଜିଲ୍ଲାର ଜାମଦା ବ୍ଲକର ପସନା ଗ୍ରାମରେ ଏକ ଭୂମିଜ ପରିବାରରେ ଜନ୍ମ ନେଇଛି । ପିଲାଟି ବର୍ତ୍ତମାନ ଭଲଅଛି ।

### ମାତ୍ର ୧୪ଟି ଜାପାନୀ ଫାର୍ମ ଶତକଡା ପଚାଶ ରପ୍ତାନୀ କରନ୍ତି

ମାତ୍ର ୧୪ ଗୋଟି ମୁଖ୍ୟ ଫାର୍ମ ଜାପାନ ଦେଶର ଆମଦାନୀର ଶତକଡ଼ା ୬୦ ଭାଗ ଓ ରପ୍ତାନୀର ଶତକଡା ୫୦ ଭାଗରେ ସାହାଯ୍ୟ କରନ୍ତି ।

### ଆଫ୍ରିକାର ସବୁଠାରୁ ବଡ ହାଇଡ୍ରୋ ଇଲେକ୍ଟ୍ରିକ୍ ଯୋଜନା

କ୍ୟାବୋର ବାସା ଡ୍ୟାମ୍ ଆଫ୍ରିକାର ସବୁଠାରୁ ବୃହତ୍ତମ ହାଇଡ୍ରୋ ଇଲେକ୍ଟ୍ରିକ୍ ଯୋଜନା । ଏହା ମୋଜାମ୍ବିକ୍ରେ ଅବସ୍ଥିତ । ଏହା ପୃଥିବୀର ଷଷ୍ଠ ବୃହତ୍ତମ ଯୋଜନା । ଏହି ଡ୍ୟାମଟି ପର୍ତ୍ତୁଗୀଜ୍ମାନଙ୍କ ଦ୍ୱାର ତିଆରି କରାଯାଇଥିଲା ଓ ଏହାର ଜଳ ନିଷ୍କାସନ

ପଥଦେଇ ପ୍ରତି ସେକେଣ୍ଡରେ ହାରାହାରି ୬୦୦୦ କ୍ୟୁବିକ୍ ମିଟର ଜଳ ବହିଷ୍କାର ହେଉଛି ।

**ପୃଥିବୀର ମଟରସାଇକଲ୍ ଚାମ୍ପିଅନ୍**

ପଶ୍ଚିମ ଜର୍ମାନର ଟୋନିମ୍ୟାଙ୍ଗ୍ ମଟର ସାଇକଲ୍ ରେସ୍ (250 CC ଓ 350 CC) ପ୍ରତିଯୋଗିତାରେ ୧୯୮୦; ୧୯୮୧ ଓ ୧୯୮୨ ରେ ପ୍ରଥମ ହୋଇଥିଲେ । ପଶ୍ଚିମ ଜର୍ମାନର ସେ ମାତ୍ର କେତେଜଣ ଭାଗ୍ୟବାନ୍ ଲୋକଙ୍କ ମଧ୍ୟରୁ ଜଣେ ଯେ କି ନିଜ ନାମରେ ଏକ ରାସ୍ତାକୁ ନାମିତ କରିଅଛନ୍ତି । ଏହାକୁ ଟନିମ୍ୟାଙ୍ଗ୍ ରିଙ୍ଗ୍ ବୋଲି କହନ୍ତି ।

**ପୃଥିବୀର ସର୍ବବୃହତ୍ତମ ରାଜ ପ୍ରାସାଦ**

ବ୍ରୁନି (ଦକ୍ଷିଣ ପୂର୍ବ ଏସିଆ) ର ସୁଲ୍‌ତାନ୍ ହାସାନାଲ୍ ବୋଲ୍‌କିଆ ଏକ ପାହାଡର ୧୦୦ ଫୁଟ ଉଚ୍ଚରେ ଥିବା ୧୭୮୮ ବଖରା ବିଶିଷ୍ଟ ଏକ ବୃହତ୍ତମ ପ୍ରାସାଦରେ ରହି ଦେଶର ରାଜଧାନୀ ବାନ୍ଦାରସେରୀ ବେଗୋୱାକୁ ଦୃଷ୍ଟିପକାଇ ଉପଭୋଗ କରୁଅଛନ୍ତି । ଏହା ପୃଥିବୀର ସର୍ବବୃହତ୍ତମ ରାଜପ୍ରାସାଦ ।

**ଉଈ ମାଟିକୁ ନିଉଟ୍ରିଏଣ୍ଟସ୍ ଯୋଗାନ୍ତି**

ଉଈଗୁଡ଼ିକ ପିମ୍ପୁଡ଼ି ଭଳି ଛୋଟ ଜୀବ । ସେମାନେ କାଠ ଇତ୍ୟାଦି ଖାଇଥାନ୍ତି । ଏହି କାଠଗୁଡ଼ିକ ଖାଇ ହଜମ କରିବା ଫଳରେ ମୃତ କାଠ ତନ୍ତୁଗୁଡ଼ିକ ସେମାନେ ଶରୀରରୁ ବହିଷ୍କାର କରି ମାଟିରେ ଛାଡ଼ିଦିଅନ୍ତି । ଏହି ବହିଷ୍କୃତ ପଦାର୍ଥରୁ ମାଟି ନିଉଟ୍ରିଏଣ୍ଟସ୍ ପାଇଥାଏ ।

**ମିନି କାର୍‌କୁ ହାତରେ ଉଠାଇହେବ**

ନିକଟରେ ପଶ୍ଚିମ ଜର୍ମାନୀର କାଲସ୍ ଆରେଣ୍ଟ୍ ବୋଲି ଏକ ଫାର୍ମ ମିନିମୋବିଲ ନାମରେ ଏକ ଛୋଟ କାର ପ୍ରସ୍ତୁତ କରିଛି । ଏହା ଏତେ ଛୋଟ ଯେ ତାହାକୁ ମଧ୍ୟ ହାତରେ ଉଠାଇ ପାର୍କିଂ କରଯାଇ ପାରିବ । ଏହାର 50 cc ମେସିନ୍ ସାହାଯ୍ୟରେ ଏହା ଘଣ୍ଟାରେ ଖୁବ୍ ବେଶିରେ ୨୫ କି.ମି ଗତିକରି ପାରିବ । ୧୦୦ କି.ମି: ପଥ ଅତିକ୍ରମ କରିବା ପାଇଁ ଏହା ସାଧାରଣ ଧରଣର ୩ ଲିଟର ପେଟ୍ରୋଲ୍ ଆବଶ୍ୟକ କରିବ ।

**ଅଗମ୍ୟ ରାସ୍ତାରେ ମାରଥନ ଦୌଡ଼**

୧୯୭୯ ମସିହାରେ ପାପୁଆନିଉ ଗୁଇନା ୯୬ କି.ମି. ବିଶିଷ୍ଟ ଅଗମ୍ୟ ରାସ୍ତା ଉପରେ ଇଣ୍ଡର୍ ମାରଥନ୍ ଦୌଡ଼ ପ୍ରତିଯୋଗିତା କରିଥିଲା । ଏହି ସମସ୍ତ ରାସ୍ତାକୁ ଅତିକ୍ରମ କରିବାପାଇଁ ଦୁଇଦିନ ଲାଗିଥିଲା । ଦୌଡ଼ିବା ସମୟରେ ଦୌଡ଼ାଳିଙ୍କୁ ଖସଡ଼ା ରାସ୍ତା, ଉଚ୍ଚ ଓ ନିମ୍ନ ଭୂମି ଅନେକ କ୍ଷତିକାରକ ମଶା ଓ କୀଟପତଙ୍ଗମାନଙ୍କ ପ୍ରତି ସତର୍କତା ଅବଲମ୍ବନ କରିବାକୁ ପଡ଼ିଥିଲା । ଏହା ପୃଥିବୀରେ ଏକ ଚମତ୍କାର ରେକର୍ଡ ସୃଷ୍ଟି କରିଛି ।

## ଶବ୍ଦ ପ୍ରତିରୋଧକାରୀ ଗୃହ

ସୋଭିଏତ୍ ୟୁନିୟନ୍‌ର ବୈଜ୍ଞାନିକମାନେ ଏକ ଶବ୍ଦ ପ୍ରତିରୋଧକାରୀ ଗୃହ ନିର୍ମାଣ କରିଛନ୍ତି । ଏହି ଗୃହର ଝରକାର ଗଠନ ଭିନ୍ନ ଧରଣର । ମୋଟା ଓ ପତଳା ଧାତୁରେ ତିଆରି । ଏହା ଫଳରେ ବାହାରୁ ଆସୁଥିବା କେତେକ ଶବ୍ଦକୁ ଏହା ପ୍ରତିରୋଧ କରେ ଓ ଅନ୍ୟ କେତେକ ଶବ୍ଦକୁ ପ୍ରବେଶ କରାଏ । ଏହା ବାସ୍ତବରେ ଏକ ନୂତନ ଉଦ୍ଭାବନ ।

## ପୃଥିବୀର ସର୍ବବୃହତ୍ତମ ବିଳାସପୂର୍ଣ୍ଣ ଜାହାଜ

କୁଇନ୍ ଏଲିଜାବେଥ୍-୨ ପୃଥିବୀର ସର୍ବବୃହତ୍ତମ ବିଳାସବ୍ୟସନପୂର୍ଣ୍ଣ ଜାହାଜ । ଏହି ଜାହାଜଟି, ମହାକାଶର ଉପଗ୍ରହଦ୍ୱାରା ଜଳ ପଥରେ ଚାଳିତ ହୁଏ । ଏହା ୯୬୩ ଫୁଟ ଲମ୍ବ ଓ ୧୩ ମହଲା ବିଶିଷ୍ଟ । ଏହାର ଗତି ୨୮ ନଟିକାଲ୍ ମାଇଲ୍ । ଏଥିରେ ରେଷ୍ଟୁରାଣ୍ଟ, ଅତ୍ୟାଧୁନିକ ସ୍ୱାସ୍ଥ୍ୟକେନ୍ଦ୍ର, ସନ୍ତରଣ ପୁଷ୍କରିଣୀ, ବ୍ୟାୟାମଶାଳା, ୫୦୦ ସ୍ଥାନ ବିଶିଷ୍ଟ ଚଳଚ୍ଚିତ୍ର ଗୃହ, ପୁସ୍ତକାଗାର, ହସ୍ପିଟାଲ୍, ବିଉଟି ପାର୍ଲର୍ ଓ ଏହିଭଳି ଅନେକ ଅତ୍ୟାଧୁନିକ ବିଳାସବ୍ୟସନପୂର୍ଣ୍ଣ ସୁବିଧାମାନ ରହିଛି । ଏଥିରେ ମଧ୍ୟ ଆଧୁନିକ ଧରଣର ପ୍ରତିରକ୍ଷା ସରଞ୍ଜାମ ରହିବାର ସୁବିଧା ଅଛି ।

## ଅକ୍ଷମ ସରକାରୀ କର୍ମୀଙ୍କ ସାଇକେଲ୍ ମାରାଥନ୍

ମିଷ୍ଟର ଏନ୍ ପିତାମ୍ବରନ ଜଣେ ଅକ୍ଷମ ସରକାରୀ କର୍ମଚାରୀ ଥିଲେ । ତାଙ୍କର ବୟସ ୩୬ ବର୍ଷ । ତାଙ୍କର ଡାହାଣଗୋଡଟି ଅକ୍ଷମ ହୋଇଯାଇଥିବାରୁ ସେ ଖଣ୍ଡେ କାଠ ଏହି ଗୋଡରେ ଲଗାଇ ଚଳପ୍ରଚଳ କରୁଛନ୍ତି । ନିକଟରେ ହୋଇଥିବା 'ଭାରତ ଦର୍ଶନ' ସାଇକେଲ୍ ପ୍ରତିଯୋଗିତାରେ ସେ ସାଇକେଲରେ ମହାରାଷ୍ଟ୍ରର ପୁନେଠାରୁ ତାମିଲନାଡୁର କନ୍ୟାକୁମାରୀ ପର୍ଯ୍ୟନ୍ତ ୧୯୬୦୦ କି:ମି: କୁ ଠିକ୍ ୪୮ ଦିନ ମଧ୍ୟରେ ଅତିକ୍ରମ କରିଥିଲେ । ସେ ଗୋଟିଏ ଗୋଡରେ ସାଇକେଲ୍ ଚଳାଇ ମଧ୍ୟ ଅନ୍ୟ ସକ୍ଷମ ଥିବା ୩୨ ଜଣ ପ୍ରତିଯୋଗୀଙ୍କୁ ସାହାଯ୍ୟ କରି ପ୍ରତିଯୋଗିତାର ଶେଷ ପର୍ଯ୍ୟନ୍ତ ନେଇଥିଲେ !

## ପୃଥିବୀ ପୁସ୍ତକ ମେଳାରେ ୧୦୦୦ ଭାରତୀୟ ପ୍ରକାଶକଙ୍କ ସହଯୋଗ

ନିକଟରେ ନୂଆଦିଲ୍ଲୀରେ ହୋଇଯାଇଥିବା ଷଷ୍ଠ ପୁସ୍ତକ ପୃଥିବୀ ପତ୍ରିକାରେ ୧୦୦୦ ଜଣ ଭାରତୀୟ ପୁସ୍ତକ ପ୍ରକାଶକ ଓ ପ୍ରାୟ ୧୦୨ ଅନ୍ୟାନ୍ୟ ରାଜ୍ୟରୁ ପୁସ୍ତକ ବ୍ୟବସାୟର ପ୍ରତିନିଧିମାନେ ଭାଗନେଇଥିଲେ ।

## ମର୍ସିଡେସ୍ କାର୍‌ର ପୃଥିବୀ ରେକର୍ଡ

ଇଟାଲୀରେ ଏକ ନୂଆ ଧରଣର ମର୍ସିଡେସ୍ 190-E 2 3.16 କାର୍ ୨୦୧ ଘଣ୍ଟା ୪୦ମି ରେ ଘଣ୍ଟାପ୍ରତି ହାରାହାରି ୨୪୭.୯୩୯ କି. ମି. ଗତିକରି ସମୁଦାୟ ୫୦ ୦୦୦ କି. ମି ପଥ ଅତିକ୍ରମ କରିଛି । ଏହା ପୃଥିବୀରେ ଏକ ନୂଆ ଇତିହାସ ସୃଷ୍ଟି କରିଛି । ଏଥିରେ ୪ ଗୋଟି ସିଲିଣ୍ଡର ବିଶିଷ୍ଟ ଇଞ୍ଜିନ୍ ଖଞ୍ଜାଯାଇଛି ।

## ପୃଥିବୀରେ ୫୦ ୦୦୦ ନିଉକ୍ଲିଅର ଅସ୍ତ୍ରଶସ୍ତ୍ର

"ଓ୍ୱାର୍ଲ୍ଡ୍ ମିଲିଟାରୀ ଓ ସୋସିଆଲ୍ ଏକ୍ସପେଣ୍ଡିଚରସ୍ ୧୯୮୩" ପ୍ରକାଶନରେ କୁହାଯାଇଛି ଯେ, ବର୍ତ୍ତମାନ ପୃଥିବୀର ଯୁକ୍ତରାଷ୍ଟ୍ର ଆମେରିକା ଓ ସୋଭିଏତ୍ ୟୁନିଅନ୍‌କୁ ମିଶାଇ ସମୁଦାୟ ୫୦୦୦୦ ନିଉକ୍ଲିୟର ଅସ୍ତ୍ରଶସ୍ତ୍ର ଗଚ୍ଛିତ ଅଛି । ଏଥିରେ ଆହୁରି ମଧ୍ୟ ପ୍ରକାଶ କରଯାଇଛି ଯେ, ୧୯୪୫ରେ ବିଶ୍ୱ ଯୁଦ୍ଧଠାରୁ ଏପର୍ଯ୍ୟନ୍ତ ଯୁଦ୍ଧରେ ପୃଥିବୀର ୧୬, ୩୫୯ ୦୦୦ ନିୟୁତ ଲୋକ ମୃତ୍ୟୁ ମୁଖରେ ପଡ଼ିଲେଣି । ସଂପ୍ରତି ଯୁକ୍ତରାଷ୍ଟ୍ର ପାଖରେ ୧୦ ୦୦୦ ନିୟୁକ୍ଲିୟର ଅସ୍ତ୍ରଶସ୍ତ୍ର ଓ ସୋଭିଏତ୍ ଋଷ ପାଖରେ ୭,୪୦୦ ନିୟୁକ୍ଲିୟର ଅସ୍ତ୍ରଶସ୍ତ୍ର ଗଚ୍ଛିତ ଅଛି । ବର୍ତ୍ତମାନ ସମଗ୍ର ପୃଥିବୀରେ ଅସ୍ତ୍ରଶସ୍ତ୍ର ପାଇଁ ୬୬୦ ବିଲିୟନ୍ ଡଲାର ଯାହାକି ପୃଥିବୀରେ ଶିକ୍ଷା ପାଇଁ ଖର୍ଚ୍ଚ ହେଉଥିବା ପରିମାଣ ଠାରୁ ସାମାନ୍ୟ କମ୍ । ପୃଥିବୀରେ ବର୍ତ୍ତମାନ ଅର୍ଦ୍ଧାଧିକ ଲୋକ ଜଣକେ ବାର୍ଷିକ ହାରହାରି ୫୦୦ ଡଲାରରୁ କମ୍ ଆୟ କରନ୍ତି ଏବଂ ପ୍ରତି ୫ଜଣ ମଧ୍ୟରୁ ଜଣେ ଦରିଦ୍ର ସୀମାରେଖା ତଳେ ଅଛନ୍ତି ।

## ମସ୍ତିଷ୍କ ଶରୀର ଗ୍ରହଣ କରୁଥିବା ଅମ୍ଳଜାନର ଏକପଞ୍ଚମାଂଶ ଗ୍ରହଣ କରେ

ଯଦିଓ ମସ୍ତିଷ୍କର ଓଜନ ମନୁଷ୍ୟ ଶରୀର ଓଜନର ପନ୍ଦର ଭାଗରୁ ଏକଭାଗ ତଥାପି ଶରୀର ଗ୍ରହଣ କରୁଥିବା ଅମ୍ଳଜାନର ଏକପଞ୍ଚମାଂଶ କେବଳ ମସ୍ତିଷ୍କ ହିଁ ବ୍ୟବହାର କରିଥାଏ । ଏହା ମନୁଷ୍ୟ ଶରୀରର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । ଶରୀର ସଂଗ୍ରହ କରୁଥିବା ସମସ୍ତ କ୍ୟାଲୋରୀ ଶକ୍ତିର ଏକପଞ୍ଚମାଂଶ ମଧ୍ୟ ମସ୍ତିଷ୍କ ଗ୍ରହଣ କରେ ।

## ବାଦୁଡ଼ି ରଡ଼ାର ସାହାଯ୍ୟରେ ଉଡନ୍ତି

ବାଦୁଡ଼ ହିଁ ପୃଥିବୀର ଏକମାତ୍ର ଉଡୁଥିବା ସ୍ତନ୍ୟପାୟୀ ପ୍ରାଣୀ । ଏହାର ଦୃଷ୍ଟିଶକ୍ତି କ୍ଷୀଣ । କିନ୍ତୁ ରାତିରେ ଉଡ଼ିବା ସମୟରେ ସେମାନେ ମନୁଷ୍ୟ ଆଖିକୁ ଦେଖା ନ ଯାଉଥିବା ଭଳି କ୍ଷୁଦ୍ର କୀଟ ବା ପତଙ୍ଗମାନଙ୍କୁ ସନ୍ଧାନ ଦ୍ୱାରା ଦେଖି ଖାଇଦିଅନ୍ତି ।

ସେମାନେ ଉଡ଼ିବା ସମୟରେ ପାଟିରୁ ମେଲବନ୍ତି ସେକେଣ୍ଡକୁ ୩୦ରୁ ୬୦ଥର ଏକ-ପ୍ରକାର ଶବ୍ଦ ସୃଷ୍ଟି କରନ୍ତି । ଏହି ଶବ୍ଦ ନିକଟସ୍ଥ ବସ୍ତୁ ସହ ଆଘାତ ପାଇ ପୁଣି ସେମାନଙ୍କ ନିକଟକୁ ଫେରିଆସେ । ବାଦୁଡ଼ି ତାର ଅତି ତୀକ୍ଷ୍ଣ କାନ ସାହାଯ୍ୟରେ ଏହି ଫେରି ଆସିଥିବା ଶବ୍ଦକୁ ଗ୍ରହଣ କରି ଉକ୍ତ ବସ୍ତୁର ଅବସ୍ଥାନ ଜାଣିପାରେ । ଏହା ଠିକ୍ ରଡାର ପ୍ରଣାଳୀରେ ହୁଏ । ଏହି ପ୍ରଣାଳୀ ସାହାଯ୍ୟରେ ସେ ଏପରି ସୁବିଧାରେ ଉଡ଼ିପାରେ ଯେ, ବାଦୁଡ଼ିକୁ ଗୋଟିଏ ଲୋକପୂର୍ଣ୍ଣ ଅନ୍ଧକାର ଗୃହ ମଧ୍ୟରେ ଆବଦ୍ଧ କରି ଉଡ଼ାଇଲେ ମଧ୍ୟ ସେ ସହଜରେ କୌଣସି ଲୋକ କିମ୍ବା ବସ୍ତୁକୁ ସ୍ପର୍ଶ ନକରି ଉଡ଼ିପାରିବ ।

**କ୍ଷୁଦ୍ର ସଞ୍ଚୟ ଯୋଜନାରେ ମହାରାଷ୍ଟ୍ର ପ୍ରଥମ**

୧୯୮୨ ଓ ୧୯୮୩ ମସିହା ପାଇଁ ଭାରତରେ ମହାରାଷ୍ଟ୍ର କ୍ଷୁଦ୍ର ସଞ୍ଚୟ ଯୋଜନାରେ ପ୍ରଥମ ସ୍ଥାନ ହାସଲ କରିଛି । କ୍ଷୁଦ୍ର ସଞ୍ଚୟ ଯୋଜନା ପାଇଁ ନିର୍ଦ୍ଧାରିତ ସର୍ବୋଚ୍ଚ ୨୮୫ କୋଟି ଟଙ୍କା ସ୍ଥଳରେ ମହାରାଷ୍ଟ୍ର ୩୭୫ କୋଟି ଟଙ୍କା ସଞ୍ଚୟ କରିଥିଲା ।

**ବିଭିନ୍ନ ତିନି ଗଜ୍ ବିଶିଷ୍ଟ ରାସ୍ତାରେ ରେଳ ଚଳାଚଳ**

ଭାରତରେ ରେଳ ଚଳାଚଳ ସାଧାରଣତଃ ତିନିଗୋଟି ବିଭିନ୍ନ ଦୂରତାର ରେଳ ଧାରଣା ଉପରେ କରାଯାଇଥାଏ । ପ୍ରଥମଟି ବ୍ରଡ୍ ଗଜ୍ (୧. ୬୭୬ ମି) ଓ ଏହା ମୁଖ୍ୟ ରାସ୍ତାମାନଙ୍କରେ ଥାଏ । ଦ୍ୱିତୀୟଟି ମିଟର ଗଜ୍ (୧ ମିଟର) ଓ ତୃତୀୟଟି ନାରୋ ଗଜ୍ (୦.୭୬୨ ଓ ୦,୬୧୦ ମି) ଯାହାକି କଷ୍ଟକର ସ୍ଥାନମାନଙ୍କ ପାଇଁ ଆବଶ୍ୟକ ହୁଏ ।

**ଅଣ୍ଡାରେ ଜୀବନ ପାଇଁ ସମସ୍ତ ଭିଟାମିନ ଅଛି**

ଅଣ୍ଡା ପୃଥିବୀରେ ଏକ ସାଧାରଣ ଖାଦ୍ୟ । ଏଥିରେ ପ୍ରଚୁର ପରିମାଣରେ ୮ଟି ବିଭିନ୍ନ ପ୍ରକାରର 'ଖ' ଭିଟାମିନ୍ ଅଛି । ରିବୋଫ୍ଲାବିନ୍ ଓ ଥିଆମାଇନ୍ ମଧ୍ୟ ଏଥିରୁ ଯଥେଷ୍ଟ ପରିମାଣରେ ମିଳେ । ଗୋଟିଏ ପୂର୍ଣ୍ଣ ଅଣ୍ଡା (ପଚାଶ ଗ୍ରାମ ଓଜନ ବିଶିଷ୍ଟ)ରେ ମନୁଷ୍ୟ ଜୀବନ ଧାରଣ ପାଇଁ ଆବଶ୍ୟକ ସମସ୍ତ ଭିଟାମିନ୍ ଅଛି ।

**ହରିଆନାରେ ୨୩୪୦ଟି ଗ୍ରାମକୁ ପାଇପରେ ଜଳଯୋଗାଣ**

ହରିଆନା ସରକାର ୨୬୯୦ଟି ଜଳବିହୀନ ଗ୍ରାମରୁ ୨୩୪୦ଟି ଗ୍ରାମକୁ ଏବେ ପାଇପ୍ ସାହାଯ୍ୟରେ ଜଳ ଯୋଗାଣର ବନ୍ଦୋବସ୍ତ କରିଛନ୍ତି । ସଂପ୍ରତି ଜଳପାଇଁ ହଇରାଣ ହେଉଥିବା ରାଜ୍ୟର ୫୬ ଲକ୍ଷ ଲୋକଙ୍କ ମଧ୍ୟରୁ ୩୧ ଲକ୍ଷ ଲୋକଙ୍କୁ ଜଳ ଯୋଗାଣର ସୁବିଧା ମିଳିଛି । ଏହି କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ପାଇଁ ସରକାର ଦିନକୁ ଗୋଟିଏ କରି ଗ୍ରାମର ଜଳ ଯୋଗାଣ ବ୍ୟବସ୍ଥା କରାଯିବ ବୋଲି ସ୍ଥିର କରିଛନ୍ତି ।

**କର୍ମ କ୍ଷେତ୍ରରେ ସ୍ତ୍ରୀ ଲୋକଙ୍କ ସ୍ଥାନ**

ଯେ କୌଣସି କାର୍ଯ୍ୟରେ ପୁରୁଷ ଲୋକଙ୍କୁ ଆଜିପର୍ଯ୍ୟନ୍ତ ପ୍ରାଧାନ୍ୟ ଦିଆଯାଇ ଆସୁଥିଲା କିନ୍ତୁ ଖାଦ୍ୟ ଓ କୃଷି ବିଭାଗର ଏକ ରିପୋର୍ଟରୁ ମହିଳାମାନଙ୍କର କାର୍ଯ୍ୟ କ୍ଷେତ୍ରରେ ଗୁରୁତ୍ୱକୁ ଦର୍ଶାଯାଇଛି । ପୃଥିବୀରେ ଗୋଟିଏ ଦିନରେ ସମସ୍ତ କାର୍ଯ୍ୟ ସମୟ ମଧ୍ୟରୁ

ଲୋକମାନେ ଦୁଇ-ତୃତୀୟାଂଶ ସମୟ ବ୍ୟବହାର କରିଥାନ୍ତି । ଗାଁ ଗହଳିରେ କାର୍ଯ୍ୟ କରୁଥିବା ସ୍ତ୍ରୀ ଲୋକମାନେ ଏପରିକି ପୃଥିବୀର ଖାଦ୍ୟ ଶସ୍ୟର ଶତକଡ଼ା ୫୦ ଭାଗ ଉତ୍ପନ୍ନ କରିଥାନ୍ତି । ଆଫ୍ରିକାର ସ୍ତ୍ରୀ ଲୋକମାନେ ମଧ୍ୟ ସେଠାକାର ଖାଦ୍ୟର ଶତକଡ଼ା ୯୦ ଭାଗ ଖାଦ୍ୟ ଉତ୍ପନ୍ନ କରିଥାନ୍ତି, କିନ୍ତୁ ବାସ୍ତବରେ ଦେଖିବାକୁ ଗଲେ ପୃଥିବୀର ସମସ୍ତ ଆୟରୁ ମାତ୍ର ଏକ-ଦଶମାଂଶ ସ୍ତ୍ରୀ ଲୋକଙ୍କ ପାଇଁ ଖର୍ଚ୍ଚ ହୁଏ ଓ ସେମାନେ ପୃଥିବୀର ସମସ୍ତ ସମ୍ପତ୍ତିର ଶତକଡ଼ା ୧ ଭାଗ ଅଧିକାର କରିଥାନ୍ତି ।

**ସଚ୍ଚ ହିନ୍ଦୁଙ୍କର ସ୍ତ୍ରୀ ଜାତିପ୍ରତି ବୈରାଗ୍ୟ**

ଶ୍ରୀ ପ୍ରମୁଖ ରମ ଏବଂ ତାଙ୍କର ୬୦ ଜଣ ଅନୁସରଣକାରୀମାନେ ନିଜକୁ ସଚ୍ଚ ହିନ୍ଦୁ ବୋଲି ପରିଚୟ ଦେଇଥିଲେ । ସ୍ୱାମୀ ନାରାୟଣ ହିନ୍ଦୁ ମିଶନ୍‌ର ସେ ହେଉଛନ୍ତି ମୁଖ୍ୟ । ସମଗ୍ର ପୃଥିବୀରେ ଏହି ମିଶନ୍‌ର ଶାଖା ଅଛି ଓ ଏହାର ପ୍ରାୟ ୩୫ ନିୟୁତ ସଭ୍ୟ ଅଛନ୍ତି । ଅତୀତରେ ଶ୍ରୀ ପ୍ରମୁଖରମ ତାଙ୍କର ୬୦ଜଣ ଅନୁସରଣକାରୀଙ୍କ ସହ ଭାଟିକାନ୍ ନଗରୀରେ ଷଷ୍ଠ ପୋପ୍ ପଲ୍‌ଙ୍କୁ ସାକ୍ଷାତ କରିବା ପାଇଁ ଯାଇଥିଲେ । ତାଙ୍କର ଅନୁରୋଧକ୍ରମେ ସେଠାକାର ଗୀର୍ଜାର କୌଣସି ସନ୍ୟାସିନୀ ତାଙ୍କ ସମ୍ମୁଖକୁ ଆସିବେ ନାହିଁ କାରଣ ଦୀର୍ଘ ୪୪ ବର୍ଷ ଧରି ସେ କୌଣସି ସ୍ତ୍ରୀର ମୁଖ ଦର୍ଶନ କରିନାହାନ୍ତି ।

ତାଙ୍କର ଅନୁରୋଧକୁ ରକ୍ଷା କରାଯାଇଥିଲା । ପୋପ୍‌ଙ୍କ ସହ କିଛି ସମୟ ସାକ୍ଷାତ କରି ସେ ରୋମରୁ ଫେରିଥିଲେ ।

**ଭାରତରେ ବ୍ରିଟିଶ୍ ଶାସନ ଉପରେ ଇଂଲଣ୍ଡର ଚଳଚିତ୍ର**

ଭାରତରେ ବ୍ରିଟିଶ ଶାସନ କାଳର ବିଷୟକୁ ନେଇ ଏବେ ଇଂଲଣ୍ଡରେ ଚଳଚ୍ଚିତ୍ର ଓ ଦୂରଦର୍ଶନ ମାନଙ୍କରେ ଅନେକ ଚିତ୍ର ପ୍ରକାଶ ପାଉଛି ଏବଂ ଏହା ଲୋକମାନଙ୍କ ମଧ୍ୟରେ ଯଥେଷ୍ଟ ଉନ୍ମାଦନା ସୃଷ୍ଟି କରିଛି । ବିଶେଷକରି ଇଂଲଣ୍ଡର ରାଜକୀୟ ଶାସକ ମାନେ ବର୍ତ୍ତମାନର ଜଟିଳ ଓ ପ୍ରତିଦ୍ୱନ୍ଦତା ମୂଳକ ପୃଥିବୀର ଜୀବନର ସମସ୍ତ ସୁଖର ଜଳାଞ୍ଜଳିକୁ ଉପଲବ୍ଧ କଲେଣି । ସେଥିପାଇଁ ସେମାନଙ୍କର ଏହି ଚିତ୍ରପ୍ରତି ବିଶେଷ ଆକର୍ଷଣ ଜାତ ହେଉଛି ।

ଦୂର ଦର୍ଶନରେ ଏହି ନାଟକର ନାମ ରଖା ଯାଇଛି "ମୁକୁଟର ମୁକ୍ତା" ବ୍ରିଟେନର ଜଣେ ବିଶେଷଜ୍ଞଙ୍କ ମତରେ ପ୍ରତ୍ୟେକ ସମୟରେ ବ୍ରିଟେନର ଶାସକ ବଂଶ ଅତୀତକୁ ଦୃଷ୍ଟି ପକାନ୍ତି କାରଣ ଅତୀତର ଘଟଣାବଳୀ ସର୍ବଦା ତାଙ୍କୁ ଆନନ୍ଦ ଦେଇଥାଏ । ଅତୀତରେ ଶାସନ ଓ ସାମ୍ରାଜ୍ୟବାଦର ପ୍ରଚାର ସେମାନଙ୍କୁ ନିଜ ଶାସନର ଏକ ସୁବର୍ଣ୍ଣ-ଯୁଗ ବୋଲି ପ୍ରତୀୟମାନ ହୁଏ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ପୂର୍ବରୁ ଏଡ୍‌ୱାର୍ଡଙ୍କର ଶାସନ କାଳ ତାଙ୍କ ପ୍ରତି ଏକ ସୁବର୍ଣ୍ଣ ଯୁଗର ମହନୀୟତା ଆଣି ଦେଉଥିଲା । କିନ୍ତୁ ବର୍ତ୍ତମାନ ସେମାନେ ଭାରତରେ ବ୍ରିଟିଶ୍ ଶାସନକୁ ସ୍ମରଣ କରି ଏହାକୁ ସୁବର୍ଣ୍ଣ ଯୁଗର ଆଖ୍ୟା ଦେଉଛନ୍ତି ।

## ରକେଶ ଶର୍ମାଙ୍କ ଶନିଗ୍ରହ ଭ୍ରମଣର ଅଭିଳାଷ

ଭାରତୀୟ ମହାକାଶଚାରୀ ରକେଶ ଶର୍ମାଙ୍କର ପ୍ରିୟର ଗ୍ରହ ହେଲା ଶନି । ତାଙ୍କୁ ପ୍ରଶ୍ନ କରିବାରୁ ସେ କହିଥିଲେ ଯେ, ମୁଁ ନିଶ୍ଚୟ ଦିନେ ଶନିଗ୍ରହ ପରିଭ୍ରମଣରେ ଯିବି ।

ଅନ୍ୟଏକ ସମୟରେ ସେ ମଧ୍ୟ ଏହି ପ୍ରସଙ୍ଗରେ କହିଥିଲେ ଯେ—ଶନିଗ୍ରହରୁ ପୃଥିବୀର ଦୃଶ୍ୟ କିପରି ତାହା ଦେଖିବା ପାଇଁ ମୋର ଯଥେଷ୍ଟ ଆଗ୍ରହ ରହିଛି ।

ଫ୍ଲାଇଟ୍ କମାଣ୍ଡର୍‌ଙ୍କୁ ଇଉରିମାଲ୍ ସେଭ୍‌ଙ୍କୁ ତାଙ୍କର ଅତିପ୍ରିୟର ଗ୍ରହ କିଏ ବୋଲି ପ୍ରଶ୍ନ ହେବାରୁ ସେ ବୃହସ୍ପତି ବୋଲି ଉତ୍ତର ଦେଇଥିଲେ । ସେ ମହାକାଶରେ ଏହି ସବୁ ଗ୍ରହ ମାନଙ୍କୁ ମହାକାଶ ଯାତ୍ରାର ରହଣୀ ସ୍ଥାନ ଭାବେ ବ୍ୟବହାର କରାଯିବା ପାଇଁ ମଧ୍ୟ ମତ ପ୍ରକାଶ କରିଥିଲେ ।

## ଆଣ୍ଟାର୍ଟିକାରେ ଅଗ୍ନିର ବିପଦ ।

ଆଣ୍ଟାର୍ଟିକା ପରି ତୁଷାର ପୂର୍ଣ୍ଣ ମହାଦେଶରେ ଏକ ସ୍ଥାୟୀ ଜନବସତି ପାଇଁ ସେଠାକାର ଜଳଚର ପ୍ରାଣୀମାନେ ଯେତେ ବିପଦ କାରକ ନୁହଁନ୍ତି ବରଂ ଆକସ୍ମିକ ଅଗ୍ନିର ଭୟ ତାଠାରୁ ଅଧିକ ବିପଦଜନକ । ଏହା ଆଣ୍ଟାର୍ଟିକା ଭଳି ଏକ ବରଫାଚ୍ଛନ୍ନ ମହାଦେଶରେ ଏକ ଆଶ୍ଚର୍ଯ୍ୟ କଥା ହୋଇପାରେ । କିନ୍ତୁ ସେଠାରେ ମଧ୍ୟ ନିଆଁର ଭୟ ସବୁଠାରୁ ଅଧିକ କାରଣ ମନୁଷ୍ୟର ଦୈନନ୍ଦିନ ଆବଶ୍ୟକୀୟ ଜଳ ଏଠାରେ କୌଣସି-ଠାରେ ମିଳେ ନାହିଁ । ନିଆଁର ବ୍ୟବହାର କରି ପାନୀୟ ଜଳ ପ୍ରସ୍ତୁତ କରାଯାଏ । ଅଗ୍ନି ବିସ୍ଫୋରଣର ଭୟ ଏତେ ଅଧିକ ଯେ, ଏପରିକି କୌଣସି ଧୂମ୍ରପାନ କଲେ ମଧ୍ୟ ସେଥିପ୍ରତି ଯଥେଷ୍ଟ ସତର୍କତା ଅବଲମ୍ବନ କରିବାକୁ ପଡ଼ବ । ଏପରିକି କେତେକ ନିର୍ଦ୍ଦିଷ୍ଟ ସ୍ଥାନରେ ହିଁ କେବଳ ଧୂମ୍ରପାନ କରାଯାଇପାରିବ । ସେଠାକାର ସ୍ଥାୟୀ ଅଧିବାସୀ ହେବାକୁ ହେଲେ ଅଗ୍ନିରୋଧକ (ଫାୟାରପ୍ରୁଫ୍) ପୋଷାକ ପରିଧାନ ମଧ୍ୟ କରିବାକୁ ପଡ଼ବ । ଏ ସମସ୍ତ ତଥ୍ୟ ତୃତୀୟ ଭାରତୀୟ ଆଣ୍ଟାର୍ଟିକା ଦଳର ମୁଖ୍ୟ ଭାରତ ସେନା ବାହିନୀର ମେଜର ପଭନ୍ ନାୟାର ପ୍ରକାଶ କରିଛନ୍ତି ।

## ଭାରତରେ ଯୌନ ଶିକ୍ଷା

ନୂଆ ଦିଲ୍ଲୀରେ "ମାନ ସେକ୍ସୁଆଲିଟି କାଉନ୍‌ସେଲିଂ ଆଣ୍ଡ୍ ଫ୍ୟାମିଲି ଲାଇଫ୍ ଏଡୁକେସନ" ଉପରେ ଏକ ସେମିନାରରେ ଭାଷଣ ଦେଇ ଜଣେ ଯୌନ ବିଶେଷଜ୍ଞ ଭାରତ ଭଳି ଜନବହୁଳ ରାଷ୍ଟ୍ରରେ ଯୌନ ଶିକ୍ଷାର ଆବଶ୍ୟକତା ଉପରେ ଯଥେଷ୍ଟ ଗୁରୁତ୍ୱ ଆରୋପ କରିଥିଲେ । ତାଙ୍କ ଭାଷଣ ପ୍ରସଙ୍ଗରେ ସେ କହିଥିଲେ ଯେ, ସାମ୍ପ୍ରତିକ ପରିସ୍ଥିତିରେ କୌଣସି ପିତାମାତା ସେମାନଙ୍କର ସନ୍ତାନମାନଙ୍କୁ ଯୌନ ଶିକ୍ଷା

ପାଇବା ପାଇଁ ବାରଣ କରୁଛନ୍ତି କିନ୍ତୁ ଅନ୍ୟ ପକ୍ଷରେ ସେମାନେ ଅତ୍ୟଧିକ ଯୌନ କାର୍ଯ୍ୟ ପ୍ରତି ନିଜର ଆଗ୍ରହ ମଧ୍ୟ ପ୍ରକାଶ କରିଥାନ୍ତି । ସେମାନଙ୍କ ମଧ୍ୟରେ ଏହି ଚିନ୍ତାଧାରାର ପାର୍ଥକ୍ୟ ହିଁ ବର୍ତ୍ତମାନ ସମାଜରେ ଯୌନ ଅପରାଧର ମୂଳ କାରଣ । ଯେତେବେଳେ ପିଲମାନଙ୍କୁ ଯୌନ ଶିକ୍ଷାରୁ ବଞ୍ଚିତ କରାଯାଉଛି ସେହି ସମୟରେ ଯେ କୌଣସି ନଗ୍ନ ସାହିତ୍ୟ ବା କଳା ପ୍ରତି ତାଙ୍କର ବିଶେଷ ଆଗ୍ରହ ପ୍ରକାଶ ପାଉଛି ଏବଂ ଏହା ମଧ୍ୟ ଯେ କୌଣସି କ୍ଷେତ୍ରରେ ଏହା ସ୍ୱାଭାବିକ ।

ଯୌନ ଶିକ୍ଷାର ପ୍ରସାର ମଧ୍ୟ କେତେକ ଉନ୍ନତ ରାଷ୍ଟ୍ର ତଥା ଦେଶରେ ପ୍ରସାର ଲାଭ କରିଛି । ଶିକ୍ଷାଳୟମାନଙ୍କରେ ଛାତ୍ରଛାତ୍ରୀଙ୍କୁ ଏପରି ଶିକ୍ଷା ଦିଆଯିବା ସମୟରେ ସେମାନଙ୍କର ଭବିଷ୍ୟତ ପାରିବାରିକ ଜୀବନ ମଧ୍ୟ ସୁଖରେ କଟୁଛି । ଏହି ପ୍ରସଙ୍ଗ ଉତ୍‌ଥାପିତ କରି ସେ କହିଥିଲେ ଯେ, ଏପରିକି ଭାରତରେ ମଧ୍ୟ 'ପରିବାର ନିୟନ୍ତ୍ରଣ'କୁ ସଫଳ କରିବା ପାଇଁ ଯୌନ ଶିକ୍ଷାର ପ୍ରସାର ଉପରେ ସରକାର ପୂର୍ଣ୍ଣ ସହଯୋଗ କରିବା ଉଚିତ ।

## ମନ୍ତ୍ରୀଙ୍କୁ ଆୟକର ଲାଗୁ ହେବ ନାହିଁ

ଆପଣ ମଧ୍ୟପ୍ରଦେଶରେ ଜଣେ ମନ୍ତ୍ରୀ ହୁଅନ୍ତୁ ଆପଣଙ୍କୁ ଆୟକର ଲାଗୁ ହେବ ନାହିଁ । ଆପଣଙ୍କ ଆୟବ୍ୟୟର ହିସାବକୁ ଆୟକର ବିଭାଗ ତନଖି କରିବେ ନାହିଁ । କାରଣ ଆପଣ ଜଣେ ସ୍ୱେଚ୍ଛା ଓ ସଚେତ ଜନସାଧାରଣଙ୍କର ନିର୍ବାଚିତ ପ୍ରତିନିଧି ଓ ଗଣତନ୍ତ୍ରର ରକ୍ଷକ, ତେଣୁ ଆପଣଙ୍କ ଆୟ ଉପରେ ଯଦି ଆୟକର ଲାଗୁ ହୋଇଥାଏ ତେବେ ତାହା ରାଜ୍ୟ ସରକାର ବହନ କରିବେ ଏ ପ୍ରକାର ଏକ ନୂତନ ସୁବିଧା ଏବେ ମଧ୍ୟପ୍ରଦେଶର ମନ୍ତ୍ରୀମାନଙ୍କୁ ମିଳିଛି ।

## ଯୌତୁକ ବିରୋଧୀ କାର୍ଯ୍ୟ ପାଇଁ ତତ୍ପରତା

ଭାରତ ସରକାରଙ୍କର ସ୍ୱରାଷ୍ଟ୍ର ବିଭାଗ ପକ୍ଷରୁ ଏବେ ଦେଶରେ ବିଶେଷକରି ପ୍ରଥମେ ଦିଲ୍ଲୀରେ ଯୌତୁକ ବିରୋଧୀ କେତେକ ଆଇନର କାର୍ଯ୍ୟକ୍ରମ ପାଇଁ ନୂତନ ସଂସ୍ଥା ଖୋଲାଯିବ ଓ ସମଗ୍ର ଦେଶରେ ମହିଳା ପୋଲିସ କର୍ମଚାରୀଙ୍କୁ ଅଧିକ ନିଯୁକ୍ତି ଦିଆଯିବ । ବିଶେଷ କରି ସ୍ତ୍ରୀଲୋକଙ୍କ ସମ୍ବନ୍ଧୀୟ ସମସ୍ତ କେଶ୍‌ଗୁଡ଼ିକୁ ଏହି ମହିଳା ପୋଲିସମାନେ ତଦନ୍ତ କରିବେ ବୋଲି ମତପ୍ରକାଶ ପାଇଛି ।

## ଅଧିକ ମୋଟା ହେତୁ ଚାକିରିରୁ ଅବସର

ଅତ୍ୟଧିକ ମୋଟା ହେତୁ ଭେନିସ୍‌ର ଜଣେ ମହିଳା କର୍ମଚାରୀଙ୍କୁ ଶୀଘ୍ର ଚାକିରିରୁ ବିରତି କରିବା ସଙ୍ଗେ ସଙ୍ଗେ ଭତ୍ତା ଦେବାର ମଧ୍ୟ ବନ୍ଦୋବସ୍ତ ହୋଇଛି ।

ତାଙ୍କର ନାମ ମିସେସ୍ ଗୁସେପିନା ମାଢିନି । ବୟସ ୪୯ ବର୍ଷ । ଓଜନ ୧୦୮ କି: ଗ୍ରା: । ଉଚ୍ଚତା ୫ ଫୁଟ ୩ ଇଞ୍ଚ ।

ଡାକ୍ତରଙ୍କ ରିପୋର୍ଟରୁ ପ୍ରକାଶ ଯେ, ଅତ୍ୟଧିକ ମୋଟା ହେତୁ ମହିଳାଜଣଙ୍କ ହୃଦରୋଗ, ମୁଣ୍ଡ ବ୍ୟଥା ଇତ୍ୟାଦିରେ କଷ୍ଟ ପାଉଥିଲେ ମଧ୍ୟ ସେ ଏହା ପ୍ରକାଶ କରୁ ନ ଥିଲେ । ମହିଳାଜଣଙ୍କ ଏହି କାର୍ମର ବିରୁଦ୍ଧରେ ଆଇନଗତ ସହାୟତା ନେବାରୁ ବିରୁଦ୍ଧପକ୍ଷ ପକ୍ଷରୁ ପ୍ରକାଶ ପାଇଥିଲା ଯେ, ମାଢିନିଙ୍କର ଶରୀରର ଆକାର ଓ ଓଜନ ତାଙ୍କର କାର୍ଯ୍ୟ କରିବାର ଦକ୍ଷତା ପ୍ରତି ଏକ ପ୍ରତିବନ୍ଧକ, ତେଣୁ ତାଙ୍କୁ ଅବସର ଦିଆଯିବା ଆବଶ୍ୟକ ।

## ମହାକାଶରେ ଯୋଗ ଓ ଆସନ

ଭାରତୀୟ ମହାକାଶଚାରୀ ରାକେଶ ଶର୍ମା ସେଲ୍ୟୁଟ୍-୭ ମହାକାଶ ଯାନରେ ପରିଭ୍ରମଣ କରୁଥିବା ବେଳେ କେତେକ ଆସନ ମଧ୍ୟ ଅଭ୍ୟାସ କରୁଥିଲେ । ମହାଶୂନ୍ୟରେ ରହି ସେଠାକାର ପରିବେଶ ସହ ନିଜର ଶରୀରକୁ ଖାପଖୁଆଇବା ପାଇଁ ଏହି ଆସନ ବା ବ୍ୟାୟାମର ଯଥେଷ୍ଟ ଆବଶ୍ୟକତା ଅଛି ବୋଲି ଶ୍ରୀ ଶର୍ମା ମତପ୍ରକାଶ କରିଛନ୍ତି । ସେ କରିଥିବା ଆସନଗୁଡ଼ିକ ମଧ୍ୟରେ 'ପଦହସ୍ତ' 'ଯାକିମିଦ୍ଧ' 'ତ୍ରିକୋଣ' ଓ 'ଉଷ୍ଟ୍ର' ପ୍ରଧାନ । ବୈଜ୍ଞାନିକମାନେ ମଧ୍ୟ ଏହି ବ୍ୟାୟାମ କରିବାଦ୍ୱାରା ଶ୍ରୀ ଶର୍ମାଙ୍କର ଶରୀରରେ ଅନେକଗୁଡ଼ିଏ ଉନ୍ନତିର ଲକ୍ଷଣ ଦେଖିପାରିଛନ୍ତି ଯାହାକି ତାଙ୍କର ସହଯୋଗୀ ଅନ୍ୟ ଦୁଇ ରୁଷ ମହାକାଶଚାରୀଙ୍କ ନିକଟରେ ସମ୍ଭବ ହୋଇ ନଥିଲା । ସେମାନଙ୍କ ମତରେ ମହାକାଶରେ ଓଜନହୀନ ପରିବେଶରେ ଦୀର୍ଘ ସମୟ ଧରି ମହାକାଶ ଯାତ୍ରାର କଷ୍ଟକୁ ମେଣ୍ଟାଇବା ପାଇଁ ବ୍ୟାୟାମର ଗୁରୁତ୍ୱ ଯଥେଷ୍ଟ ବେଶୀ ।

## କବିଙ୍କୁ କବିତା ବନ୍ଦ ପାଇଁ ଚାପୁଡ଼ା ମାଡ

ଯୌନପୁରର ଜଣେ ଉର୍ଦ୍ଦୁ କବି ସମ୍ପ୍ରତି ହେଉଥିବା ଏକ ଯୁବ କଂଗ୍ରେସ ସଭାରେ କବିତା ପାଠ କରୁଥିବା ସମୟରେ ସଭାର ସଭାପତି ସେହି ମଞ୍ଚ ଉପରେ ଜନସାଧାରଣଙ୍କ ସମ୍ମୁଖରେ ତାଙ୍କୁ ଚାପୁଡ଼ା ମାରି କବିତା ପାଠ ବନ୍ଦ କରିବାକୁ ଧମକ ଦେଇଥିଲେ । ସେହି ଜିଲ୍ଲାର ଅନ୍ୟ ହିନ୍ଦୀ ଓ ଉର୍ଦ୍ଦୁ କବିମାନଙ୍କୁ ଉକ୍ତ ସଭାରେ କବିତା ପାଠ କରିବାପାଇଁ ନିମନ୍ତ୍ରଣ କରାଯାଇଥିଲା ।

କିନ୍ତୁ ଯୌନପୁରର ଏହି ଉର୍ଦ୍ଦୁ କବି ତାଙ୍କର କବିତା ପାଠ କରିବା ସମୟରେ ତାହା ସଭାପତିଙ୍କୁ ଭଲ ଲାଗି ନ ଥିଲା । ତେଣୁ ସେ କବିଙ୍କୁ କବିତା ପାଠ ବନ୍ଦ କରି

ଦେବା ପାଇଁ ଆଦେଶ ଦେଇଥିଲେ । ମାତ୍ର କବିଜଣକ ତାଙ୍କ କଥାକୁ ଭ୍ରୂକ୍ଷେପ ନ କରି କବିତା ପାଠ କରିବାରେ ଲାଗିବାରୁ ଏ ପ୍ରକାର ଅପ୍ରୀତିକର ପରିସ୍ଥିତି ଉପୁଜିଥିଲା ।

## ନାରୀ ଶିକ୍ଷା ପାଇଁ ପୁରସ୍କାର

ଭାରତ ସରକାରଙ୍କର ଶିକ୍ଷା ଓ ସଂସ୍କୃତି ବିଭାଗ ପକ୍ଷରୁ ମଧ୍ୟପ୍ରଦେଶ ସରକାର ରାଜ୍ୟରେ ନାରୀ ଶିକ୍ଷାର ବହୁଳ ପ୍ରସାର ଘଟାଇପାରିଥିବାର ୨୫ ଲକ୍ଷ ଟଙ୍କା ପୁରସ୍କାର ଦେଇଛନ୍ତି ।

ମଧ୍ୟପ୍ରଦେଶର ସିଧି ଜିଲ୍ଲା ନାରୀ ଶିକ୍ଷା ସର୍ବୋତ୍ତମ ସ୍ତରରେ ପହଞ୍ଚିଥିବାରୁ ଏହି ଜିଲ୍ଲାକୁ ୩ ଲକ୍ଷ ଟଙ୍କା ପୁରସ୍କାର ଦିଆଯାଇଛି ।

## ହାଇକୋର୍ଟରେ ଅନ୍ଧାକାନୁନ ଚଳଚ୍ଚିତ୍ର ପ୍ରଦର୍ଶିତ ହୋଇଛି

ଗତ ଏପ୍ରିଲ ୨୬ ତାରିଖରେ ବିବାଦୀୟ ହିନ୍ଦି ଚଳଚ୍ଚିତ୍ର 'ଅନ୍ଧାକାନୁନ' ପ୍ରଦର୍ଶନ ପାଇଁ ମଧ୍ୟପ୍ରଦେଶ ହାଇକୋର୍ଟ ଆଦେଶ ଦେଇଥିଲେ ।

ଏହି ଚଳଚ୍ଚିତ୍ରକୁ ନିଷିଦ୍ଧ କରିବା ନିମନ୍ତେ ଭାରତ ସରକାରଙ୍କ କେନ୍ଦ୍ର ସେନ୍ସର ବୋର୍ଡ ବିରୁଦ୍ଧରେ ଆଗତ ହୋଇଥିବା ଏକ ରିଟ୍ ପିଟିସନର ବିଚାର କରି କୋର୍ଟ ଏଭଳି ନିର୍ଦ୍ଦେଶ ଦେଇଛନ୍ତି । ଏହି ରିଟ୍ ପିଟିସନରେ ଅଭିଯୋଗ କରାଯାଇଛି କି ଏ ଚଳଚ୍ଚିତ୍ର ବିଚାର ବିଭାଗର ମର୍ଯାଦାହାନୀ କରୁଛି ଓ ଏଥିରେ ବହୁ ଆପତ୍ତିଜନକ ଦୃଶ୍ୟ ଅଛି ।

ଚିଫ୍‌ଜଷ୍ଟିସ୍ ଓ ଅନ୍ୟ ଜଷ୍ଟିସ୍‌ମାନଙ୍କୁ ନେଇ ଗଠିତ ଏକ ଡଭିଜନ ବେଞ୍ଚ ଅଭିଯୋଗକାରୀଙ୍କ ଯୁକ୍ତି ଶୁଣିବା ପରେ ଉକ୍ତ ଚଳଚ୍ଚିତ୍ରକୁ କୋର୍ଟରେ ପ୍ରଦର୍ଶନ ପାଇଁ ଆଦେଶ ଦେଇଥିଲେ ।

